# ଶ୍ରୀ ଶିବଭକ୍ତି ରସାମୃତ

ଆପଣ ଶିବକୃପାର ଅଧିକାରୀ
ହେବାକୁ ଚାହାଁନ୍ତି କି ?

୧. ଶ୍ରୀ ଶିବ ଜ୍ଞାନବୋଧ
୨. ଆତ୍ମଲିଙ୍ଗ ସାଧନା
୩. ରାଉଳ ମନ୍ତ୍ର

କୈଳାସ ଓ ମାନସରୋବର ଦୃଶ୍ୟ



ଯନ୍ତ୍ରୀ ସହଦେବ ରାଉଳ

**ଶ୍ରୀ ଶିବ ଭକ୍ତି ରସାମୃତ**


ଲେଖକ : ସହଦେବ ରାଉଳ
ଗ୍ରା: ପୋ : ସାହସପୁର / ଭାୟା : ଦିଗପହଣ୍ଡି
ଜି : ଗଞ୍ଜାମ, ଓଡ଼ିଶା - ୭୬୧୦୧୨
ଫୋ : ୯୪୩୮୩୮୭୯୫୭/୮୦୯୩୦୯୮୨୧୨



ଦ୍ୱିତୀୟ ସଂସ୍କରଣ-୨୦୧୧

ପ୍ରକାଶକ: ଶ୍ରୀ ଶିବାଶିଷ କର
ଓଡ଼ିଶା ବୁକ୍ ଏମ୍ପୋରିୟମ୍
କଟକ - ୭୫୩ ୦୦୨
ଦୂରଭାଷ: ୨୩୬୮୦୨୦ (ନିମ୍‌ଚୌଡ଼ି)
୨୩୩୪୪୭୪ (ବାଦାମବାଡ଼ି)
୯୩୩୭୫୧୧୩୬୨ (ମୋ.)





*ମୁଦ୍ରଣ :* ଅଲ୍‌ଟ୍ରା ଇମ୍ପ୍ରେସନ୍, ସୂତାହାଟ (କର ପାଲେସ୍),କଟକ-୧

***Price : Rs. 25/-***
ISBN 81-8421-20-12




ଲେଖକ : ସହଦେବ ରାଉଳ

# ଉତ୍ସର୍ଗ ପତ୍ର



ସ୍ୱ ରଘୁନାଥ ରାଉଳ
(୧୯୧୧ - ୧୯୮୩)

ମୋର ବୋଉ ସ୍ୱର୍ଗତ ଚନ୍ଦ୍ରକଳା ରାଉଳ ଓ ମୋର ନନା ସ୍ୱର୍ଗତ ରଘୁନାଥ ରାଉଳଙ୍କର ଅତୁଳନୀୟ ଅବଦାନରୁ ମୁଁ ଆଜି ଏହି ଦୁନିଆଁର ଅପରୂପ ସୌନ୍ଦର୍ଯ୍ୟକୁ ଉପଭୋଗ କରିପାରିଛି । ତାଙ୍କର ଆଦେଶ, ଉପଦେଶ ଓ ଆଦର୍ଶରେ ଅନୁପ୍ରାଣୀତ ହୋଇ ଆଧ୍ୟାତ୍ମିକ ଶକ୍ତିର ଅନୁଭବ କରିବା ସଙ୍ଗେ ସଙ୍ଗେ ମୋର ଜୀବନର ଚଲାପଥକୁ ଆଲୋକିତ କରିପାରିଛି । ସେହି ମାଁ-ବାପାଙ୍କ ପାଖରେ ଚୀର ଋଣୀ ହୋଇ ମଧ୍ୟ ତାଙ୍କ ପ୍ରୀତ୍ୟାର୍ଥେ କିଛି କରିପାରି ନାହିଁ ।

ଆଜି ସେହି ସ୍ୱର୍ଗବାସୀ ମାଁ-ବାପାଙ୍କର କର-କମଳରେ ମୋର ଏହି **''ଶ୍ରୀ ଶିବଭକ୍ତି ରସାମୃତ''**କୁ ଅର୍ପଣ କରି ନିଜକୁ ଧନ୍ୟ ମନେକରୁଛି ।

*''ତମର ସାନପୁଅ ସଦବ''*



## ପୁସ୍ତକଟିର ମହତ୍ ଉଦ୍ଦେଶ୍ୟ

ଏହି ପୁସ୍ତକଟିର ବିଷୟ ବସ୍ତୁକୁ ତିନି ଭାଗରେ ବିଭକ୍ତ କରାଯାଇଛି:

(୧) ପ୍ରଥମ ଭାଗର ନାମ - **''ଶ୍ରୀ ଶିବ ଜ୍ଞାନବୋଧ''** ରଖାଯାଇଛି । ଏହି ଭାଗଟି ଆବାଳବୃଦ୍ଧ-ବନୀତାଙ୍କ ପାଇଁ ପଠନ ଓ ଇଶ୍ୱରୀୟ ଜ୍ଞାନ ଆହରଣ ପାଇଁ ଉଦ୍ଦିଷ୍ଟ । ଏଠାରେ ମୁଁ ମୋର ଅନୁଭୂତିକୁ ପ୍ରକାଶ କରିଛି ।

(୨) ଦ୍ୱିତୀୟ ଭାଗର ନାମ - ''ଆତ୍ମଲିଙ୍ଗ ସାଧନା'' ରଖାଯାଇଛି । ଏହି ଭାଗଟି ସେହି ଶ୍ରଦ୍ଧାକୁ ଆତ୍ମବିଶ୍ୱାସୀମାନଙ୍କୁ ଉଦ୍ଦିଷ୍ଟ, ଯେଉଁମାନେ କହନ୍ତି :

**ପିଣ୍ଡ ବ୍ରହ୍ମାଣ୍ଡ ଏକ ମତ ।**
**ଏହା ଜାଣନ୍ତି ସୁପଣ୍ଡିତ ।।**

ଏଠାରେ ମୁଁ ମୋର ଅନୁଭୂତିକୁ ପ୍ରକାଶ କରିଛି । ଯେଉଁମାନେ ଏହି ସାଧନା କରିବେ ସେମାନେ ଜାଣିପାରିବେ ଯେ - ଆତ୍ମା, ପରମାତ୍ମାଙ୍କ ଅଂଶ ବିଶେଷ ଏବଂ ମାନବ ସେବାହିଁ ମାଧବ ସେବା । ଆହୁରି ମଧ୍ୟ ଏଥିରେ କେତେ ଗୁଡ଼ିଏ ସାଧନା ଅଛି ଯାହାକି ନିଜର ମନସ୍କାମନା ସିଦ୍ଧି କରିବା ପାଇଁ ଅମୋଘ ଅସ୍ତ୍ର ପରି କାମ କରେ ।

(୩) ତୃତୀୟ ଭାଗର ନାମ - ''ରାଉଳ ମନ୍ତ୍ର'' ରଖାଯାଇଛି । ମୋର ଗୋସାଁଇ ବାପା ସ୍ୱର୍ଗତ ଯୋଗୀ ରାଉଳଙ୍କ ସ୍ୱହସ୍ତ ଲିଖିତ ତାଳପୋଥିରୁ ଉଦ୍ଧୃତ କରି ଏଠାରେ ଉଲ୍ଲେଖ କରିଛି । ଯେଉଁ ଜାତି ବା ବଂଶର ଲୋକମାନେ ଦେଉଳରେ ଶିବ ପୂଜା କରିବା ଗୋଟିଏ ବୃତ୍ତିଗତ ପରମ୍ପରା ଅଟେ, ସେମାନଙ୍କ ପାଇଁ ଏହି ଭାଗଟି ଅତି ଉପାଦେୟ ଅଟେ ।

## ପାଠକ ଓ ସାଧକମାନଙ୍କୁ ପଦେ ...

ଅମୂଲ୍ୟ ସମ୍ପଦରେ ଭରା ଏହି **''ଶ୍ରୀ ଶିବଭକ୍ତି ରସାମୃତ''** ପୁସ୍ତକଟିକୁ ପାଠକମାନଙ୍କ ହାତରେ ଦେବା ପୂର୍ବରୁ ପାଠକମାନଙ୍କୁ ଅନୁରୋଧ କରୁଛି ଯେ - ସେମାନେ କାୟମନୋବାକ୍ୟରେ ଲିଖିତ ଇଂରେଜି ପଂକ୍ତିଟିକୁ ମନେରଖିବା ଉଚିତ -

**I AM WORSHIPING TO GOD TO ACHIEVE A KIND OF PLATONIC BLISS WHICH CAN NOT BE EXPLAIN TROUGH LOGIC.**

ଭଗବାନଙ୍କର ନାମ ଜପରେ କ'ଣ ଲାଭ ହୁଏ ? କେତେ ଲାଭ ହୁଏ ? ଏହାର ପୁରା ବର୍ଣ୍ଣନା କରିବାବାଲା କୌଣସି ବକ୍ତା ଏପର୍ଯ୍ୟନ୍ତ ଜନ୍ମ ହୋଇନାହାଁନ୍ତି କି ଜନ୍ମ ହେବେ ନାହିଁ ମଧ୍ୟ ।

ନାରଦ ତାଙ୍କର ପୂର୍ବ ଜନ୍ମରେ ବିଦ୍ୟାହୀନ, ଜାତିହୀନ, ବଳହୀନ ଦାସୀପୁତ୍ର ଥିଲେ । ସେ ସାଧୁ ସଙ୍ଗ ଓ ଭଗବତ୍ ନାମ ଜପର ପ୍ରଭାବରେ ପରଜନ୍ମରେ ଦେବର୍ଷି ନାରଦ ହୋଇଗଲେ ଏବଂ ଆଜିର ଯୁଗରେ ସମସ୍ତ ସମ୍ବାଦପତ୍ର ପ୍ରକାଶକ ଦେବର୍ଷି ନାରଦଙ୍କ ରୀତିନୀତିରେ ଅନୁପ୍ରାଣିତ ଅଟନ୍ତି । ଏହିପରି ଅନେକ ଉଦାହରଣ ରହିଛି ଯାହାକି ଲେଖିଲେ ସରିବ ନାହିଁ । ଅର୍ଥାତ୍ ଭଗବତ୍ ନାମ ଓ ଜପର ମହିମା ଅନନ୍ତ ଓ ଅବର୍ଣ୍ଣନୀୟ ଅଟେ ।

ପରମପିତା ପରମଆତ୍ମା ଶିବଙ୍କର ତ ଆକାର ନାହିଁ, ତେବେ ଆମେ କାହିଁକି ମୂର୍ତ୍ତି ପୂଜା ଓ ଧ୍ୟାନ କରିବା ବୋଲି କେହି କେହି ପ୍ରଶ୍ନ କରିଥାନ୍ତି । ଏହାର କାରଣ, ଆମେ ଭଗବାନ୍‌ଙ୍କର ମୂର୍ତ୍ତି ବା ପ୍ରତୀକ ଗୁଡ଼ିକୁ ଦେଖିଲେ ମନରେ ଭାବ ସୃଷ୍ଟି ହୁଏ ଏବଂ ଭାବରୁ କ୍ରିୟା ସୃଷ୍ଟି ହୁଏ । ଫଳରେ ଅବସ୍ଥାରେ ପରିବର୍ତ୍ତନ ହୁଏ । ଠିକ୍ ଯେପରି ଉତ୍ତେଜକ ବା ଅଶ୍ଳୀଳ ଚିତ୍ର ଦେଖିଲେ ମନରେ କାମ ଉଦ୍ଦିପନା ସୃଷ୍ଟି ହୁଏ କିମ୍ବା ସୁନ୍ଦର ଫୁଲ ବଗିଚାରେ ବୁଲିଲେ ମନ ପ୍ରଫୁଲ୍ଲ ରହେ ।

ମୋର ସାନ ଭାଇନା ଶ୍ରୀ ସିମାଞ୍ଚଳ ରାଉଳ ଜମିରେ କଠିନ ଚାଷକାମ କରୁଥିବା ସମୟରେ ମୁଁ ଘରେ ବସି ପାଠ ପଢୁଥାଏ । ମୁଁ ଦୁର୍ବଳ ସ୍ୱାସ୍ଥ୍ୟ ହୋଇଥିବାରୁ ସେ ମୋତେ ପାଠପଢ଼ି ଭଲ ମଣିଷ ହେବାପାଇଁ ଉପଦେଶ ଦେଉଥିଲେ । ତେଣୁ ତାଙ୍କୁ ମୁଁ ବହୁତ କୃତଜ୍ଞତା ଅର୍ପଣ କରୁଛି ।

ମୋର ବଡ଼ ଭାଇନା ସ୍ୱର୍ଗତ ଜୁରିଆ ରାଉଳ ଗାଁରେ ଜଣେ ଆଧ୍ୟାତ୍ମିକ ବ୍ୟକ୍ତି ଥିଲେ ଯିଏକି ମଲା ମାଛିକୁ ମ କହୁ ନ ଥିଲେ । ମୁଁ ପିଲାଟି ଦିନରୁ ତାଙ୍କ ମୁହଁରୁ ଶ୍ରୀ ରାମକଥା ରସାମୃତ ପାନକରି ନିଜକୁ ଧନ୍ୟ ମନେକରିଛି । ତେଣୁ ତାଙ୍କର ଅନ୍ତିମ ସମୟରେ ତାଙ୍କର ଇଚ୍ଛା ପୂରଣ କରିବାପାଇଁ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗର ପ୍ରସାଦ ଆଣି ତାଙ୍କୁ ଖୁଆଇଥିଲି ।

ମୋର ବଡ଼ ଭାଇନା ଓ ବଡ଼ ଭାଉଜଙ୍କର ବାହାଘର କେବେ ହୋଇଥିଲା ମୁଁ ଜାଣିନାହିଁ କି ମୁଁ କେବେ ପଚାରିନାହିଁ ମଧ୍ୟ । ମୋର ବଡ଼ ଭାଇନା-ଭାଉଜଙ୍କୁ ମୁଁ ମୋର ଧର୍ମର ବାପା-ମାଁ ବୋଲି ଭାବେ । କାରଣ ମୋର ବଡ଼ ଭାଉଜ ମୋତେ ପିଲାଟି ଦିନରୁ ନିଜର ହାତରେ ଖୁଆଇ ବଡ଼ ମଣିଷ କରିଛନ୍ତି ଓ ସବୁବେଳେ ମୋତେ ''ବାପ'' ବୋଲି ଡାକୁଛନ୍ତି । ମୁଁ ତାଙ୍କର ଋଣ କେବେ ମଧ୍ୟ ଶୁଝିପାରିବି ନାହିଁ । ହଁ କିଛିଟା ଋଣ ଶୁଝିପାରିବି ଭାବି ଜାମ୍ମୁ-କାଶ୍ମୀରର ହିମାଳୟରେ ଥିବା ଚମତ୍କାରୀ ଅମରନାଥ ଜ୍ୟୋତିର୍ଲିଙ୍ଗ, ତାଙ୍କୁ ଦର୍ଶନ କରାଇଥିଲି ।

ମୁଁ ହାଇସ୍କୁଲରେ ପଢ଼ିବା ସମୟରେ ମୋର ଜ୍ଞାନ ଗୁରୁ ସ୍ୱର୍ଗତ ଦୁର୍ଯ୍ୟୋଧନ ମହାରଣାଙ୍କ ଠାରୁ ହିନ୍ଦୁ ଧର୍ମର ଅଷ୍ଟାଦଶ ମହାପୁରାଣ ଓ ନଅ ଖଣ୍ଡ ଉପ-ପୁରାଣ ପଢ଼ିବାର ସୌଭାଗ୍ୟ ଲାଭ କରିଥିଲି ଓ ତା' ଉପରେ ସମ୍ୟକ୍ ଜ୍ଞାନ ମିଳିଥିଲା । ମୋର ମନ୍ତ୍ର ଗୁରୁ ସ୍ୱର୍ଗତ ନୃସିଂହ ତ୍ରିପାଠୀଙ୍କ ଠାରୁ ଦେବାଦେବୀଙ୍କ ପୂଜା ପଦ୍ଧତି ଓ ମନ୍ତ୍ର ଜ୍ଞାନ ଆହରଣ କରିଥିଲି । ମୋର ପିତୃଦେବ ସ୍ୱର୍ଗତ ରଘୁନାଥ ରାଉଳଙ୍କ ମୁଖ ନିସୃତ ମନ୍ତ୍ର :

**କର ପ୍ରଥମେ ରାଜକାର୍ଯ୍ୟ ।**

**ଅନ୍ତିମେ କର ପିତୃକାର୍ଯ୍ୟ ।।**

(ଭାବାର୍ଥ - ସାମୁହିକ ବା ସାମାଜିକ କାର୍ଯ୍ୟକୁ ରାଜକାର୍ଯ୍ୟ କୁହାଯାଏ ଏବଂ ବ୍ୟକ୍ତିଗତ କାର୍ଯ୍ୟକୁ ପିତୃକାର୍ଯ୍ୟ କୁହାଯାଏ । ଧରିନିଅ ନିଜ ଗ୍ରାମର ଲୋକମାନେ ମିଳିମିଶି ନିଷ୍ପତ୍ତି ନେଲେ ଯେ କାଲି ସକାଳ ୧୦ଟାରେ ସମସ୍ତେ ମିଳିମିଶି ଗାଁର ପୋଖରୀରେ ଥିବା ଦଳ ଓ ଅଳିଆ-ଆବର୍ଜନା ବାହାରକରି ପୋଖରୀଟିକୁ ସଫା କରିବା । ତେବେ ନିର୍ଦ୍ଧାରିତ ସମୟରେ ନିଜର ଯେତେ ଗୁରୁତ୍ୱପୂର୍ଣ୍ଣ କାମ ଥାଉନା କାହିଁକି, ସବୁକୁ ଛାଡ଼ି ପୋଖରୀ ସଫାଇ କାମ (ରାଜକାର୍ଯ୍ୟ)ରେ ନିଜକୁ ନିୟୋଜିତ କରିବା ଉଚିତ୍ । ଉତ୍କଳମଣି ଗୋପବନ୍ଧୁ ଦାସଙ୍କର ପୁତ୍ର ରୋଗ ଶଯ୍ୟାରେ ପଡ଼ିଥିବା ସତ୍ତ୍ୱେ, ସେ ନିଜର ପୁଅର ଚିକିତ୍ସାକୁ ଗୁରୁତ୍ୱ ନ ଦେଇ ଗାଁର ହଇଜାରେ ଆକ୍ରାନ୍ତ ହୋଇଥିବା ଗ୍ରାମବାସୀ ମାନଙ୍କର ସେବାରେ ଲାଗିଯାଇଥିଲେ । ତେଣୁ ଆମେ ତାଙ୍କୁ ଉତ୍କଳମଣି କହୁ ।)

ମୋ ପିତାଜୀଙ୍କ ଏହି ମନ୍ତ୍ର ମୋତେ ଜଣେ କର୍ମବୀର ହେବା ପାଇଁ ପ୍ରେରଣା ଦେଇଥିଲା । ତେଣୁ ମୁଁ ବାମନ ହୋଇ ମଧ୍ୟ ଚନ୍ଦ୍ରମାକୁ ଧରିପାରିଛି ଏବଂ କର୍ମ କ୍ଷେତ୍ରରେ ମୁଁ ସବୁଠାରେ ପ୍ରଶଂସାର ପାତ୍ର ହୋଇପାରିଛି ।

ମୋର ବୋଉ ସ୍ୱର୍ଗତ ଚନ୍ଦ୍ରକଳା ରାଉଳଙ୍କ ଉପଦେଶ ଓ ଆଶିର୍ବାଦରେ ମୁଁ ପିଲାଦିନରୁ ଆଧ୍ୟାତ୍ମିକ ପଥର ପଥିକ ହୋଇପାରିଛି । ତା'ର ଫଳ ସ୍ୱରୂପ ମୁଁ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ଓ ଚାରିଧାମ ଦର୍ଶନ କରି ଆଧ୍ୟାତ୍ମିକ ଶକ୍ତିର ଅନୁଭବ କରିପାରିଛି । ତେଣୁ ଏହି ପୁସ୍ତକଟି ଲେଖିବାପାଇଁ ଇଚ୍ଛାକଲି । ମୋର ଦଦା ଶ୍ରୀ ମାର୍କଣ୍ଡ ରାଉଳଙ୍କ ପ୍ରେରଣାରେ ଏହି ପୁସ୍ତକଟିର ଲେଖା ତା-୨୦-୦୨-୨୦୧୦ ଦିନ, ଶ୍ରୀ ଶାରଦା ପଞ୍ଚମୀ ଦିନ ଆରମ୍ଭକରି ତା-୧୬-୦୫-୨୦୧୦ ଦିନ ପୂର୍ଣ୍ଣ ହେଲା ।

ପ୍ରୀୟ ପାଠକ ଓ ସାଧକମାନଙ୍କୁ ମୋର ଅନୁରୋଧ-ଏହି ପୁସ୍ତକରେ ଯଦି କିଛି ଦୋଷ, ତୃଟି ପରିଲିଖିତ ହୁଏ, ତେବେ ହଂସ ସ୍ୱରୂପ ସାର ବସ୍ତୁକୁ ସଂଗ୍ରହ କରି ନିଜର ଆତ୍ମକଲ୍ୟାଣ ସାଧନ କରିବେ । ତା'ପରେ ମୋତେ ଲେଖି ଜଣାଇଲେ ପରବର୍ତ୍ତି ସଂସ୍କରଣରେ ସଂଶୋଧନ କରିବା ସହ ସେମାନଙ୍କ ପାଖରେ ମୁଁ କୃତଜ୍ଞତା ଜ୍ଞାପନ କରିବି ।

॥ ଇତି ॥

***ଯନ୍ତ୍ରୀ ସହଦେବ ରାଉଳ***

# ସୂଚୀପତ୍ର

## ପ୍ରଥମ ଭାଗ - ଶ୍ରୀ ଶିବ ଜ୍ଞାନବୋଧ



## ଦ୍ୱିତୀୟ ଭାଗ - ଆତ୍ମଲିଙ୍ଗ ସାଧନା



## ଅନେକରେ ଏକ ଓ ଏକରୁ ଅନେକ

ବିଜ୍ଞାନର ଜୟଯାତ୍ରା ଭିତରେ ମନୁଷ୍ୟ ତାର ମାନସ ପଟରେ ଓଁ କାରର ପ୍ରତିଧ୍ୱନୀ ଶୁଣେ । ଆଧାତ୍ମିକତା ହିଁ ଆମର ସଂସ୍କୃତିର ଭିତ୍ତିଭୂମି । ଏହି ଆଧାତ୍ମିକତା ମଣିଷ ମନରୁ କାମ, କ୍ରୋଧ, ଲୋଭ, ଇର୍ଷା, ଦ୍ୱେଷ, ପରଶ୍ରୀକାତରତା ଆଦି ପଶୁତ୍ୱକୁ ଲୋପକରି ମାନବିକତା ଆଣିଦିଏ । ଏହି ମାନବିକତାର ଉଦ୍ରେକ ପାଇଁ ଆମ ସଂସ୍କୃତିରେ ଜପ, ତପ, ପୂଜାର୍ଚ୍ଚନା, ମେଳାମହୋତ୍ସବ ଆଦିର ପରିକଳ୍ପନା କରାଯାଇଛି । ସେଥିପାଇଁ ପ୍ରତୀୟମାନ ହୁଏ ଧର୍ମଧାରଣାର ଆଧାର ମନ୍ଦିର, ମସ୍‌ଜିଦ୍, ଗିର୍ଜା ଓ ଗୁରୁଦ୍ୱାର ପ୍ରତିଷ୍ଠିତ ହୋଇଛି ।



ପରମପିତା ପରମଆତ୍ମା ଶିବ ଏହି ସଚରାଚର ବିଶ୍ୱବ୍ରହ୍ମାଣ୍ଡକୁ ସନ୍ତୁଳିତଭାବେ ନିୟନ୍ତ୍ରଣ କରି ରଖିବାପାଇଁ ନିଜକୁ ତିନୋଟି ରୂପରେ ପ୍ରକାଶ କରିଛନ୍ତି ଯଥା – ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର । ତେଣୁ ତାଙ୍କୁ କେହି କେଉଁ ରୂପରେ ଧ୍ୟାନ କରିଥାନ୍ତି । ଯିଏ ଯେଉଁ ରୂପରେ ଧ୍ୟାନ କରୁନା କାହିଁକି ସେସବୁ ପରମପିତା ପରମଆତ୍ମା ଶିବଙ୍କୁ ହିଁ ବୁଝାଏ । ଯେପରି କି ଜଣେ ଲୋକ ଏକାଧାରରେ ବାପା, ଭାଇ, କକା, ମଉଷା, ମାମୁଁ, ଶଶୁର, ଶଳା, ଅଜା ଇତ୍ୟାଦି ନାମରେ ଭିନ୍ନ ଭିନ୍ନ ଲୋକଙ୍କ ପାଖରେ ସମ୍ମାନିତ ହୋଇଥାଏ । ସେହିପରି ଅନନ୍ତ ଗୁଣ ସମ୍ପର୍ଣ୍ଣ ପ୍ରଭୁଙ୍କ ଅନନ୍ତ ନାମ ରହିବା ସ୍ୱାଭାବିକ । ତାଙ୍କର ନିଜର ନାମ ଓଁ ଅଟେ । ଓଁ ମଧ୍ୟରେ ପ୍ରଭୁଙ୍କର ସକଳ ଗୁଣ, କର୍ମ ଓ ସ୍ୱଭାବ ସନ୍ନିବିଷ୍ଟ ଅଟେ । ତେଣୁ ଭଗବାନଙ୍କୁ କେହି କେହି ଏକରୁ ଅନେକ କହିଲାବେଳେ ଅନ୍ୟ କେହି କେହି ଅନେକରେ ଏକ ବୋଲି କହିଥାନ୍ତି ।



ସାଇ ବାବାଙ୍କ ମତରେ **''ସବ୍‌କା ମାଲିକ୍ ଏକ୍''** ।





## ଭଗବାନ୍‌ଙ୍କ ନାମର ମହିମା

ଜଣେ ଲୋକ କିଛି ବଡ଼ ବିପଦର ସମ୍ମୁଖିନ ହେଲେ ସେ ଅନେକ ପ୍ରକାର ଭୌତିକ ଉପଚାରର ଆଶ୍ରୟ ନିଏ । କିନ୍ତୁ ସେଥିରେ ଯଦି ତାର ଦୁଃଖ ଦୂର ନ ହୁଏ ସେ ଶେଷରେ ମହାଶୂନ୍ୟକୁ ହାତଟେକି ଭଗବାନ୍‌ଙ୍କୁ ନିଜର ଦୁଃଖ ଜଣାଏ । ସେତେବେଳେ ସେ ଏତେ ଆତ୍ମ ବିଶ୍ୱାସୀ ହୋଇଯାଇଥାଏ ଯେ— ତା'ର ଦୁଃଖ କଷ୍ଟ ଆପଣାଛାଏଁ ଚମତ୍କାରୀଭାବେ ଦୂର ହୋଇଯାଏ । ଯେପରିକି ସୂର୍ଯ୍ୟ ଉଦୟରେ ଅନ୍ଧକାର ଦୂର ହୋଇଯାଏ ।

ସତ୍ୟ ଯୁଗରେ ଭଗବାନ୍‌ଙ୍କୁ ଧ୍ୟାନକରି ସିଦ୍ଧି ମିଳୁଥିଲା । ତ୍ରେତୟା ଯୁଗରେ ଭଗବାନ୍‌ଙ୍କ ଉଦ୍ଦେଶ୍ୟରେ ଯଜ୍ଞକରି ସିଦ୍ଧି ମିଳୁଥିଲା । ଦ୍ୱାପର ଯୁଗରେ ଭଗବାନ୍‌ଙ୍କୁ ପୂଜା ଅର୍ଚ୍ଚନାକରି ସିଦ୍ଧି ମିଳୁଥିଲା । କିନ୍ତୁ ଏହି



କଳୀଯୁଗରେ ଶ୍ରଦ୍ଧାର ସହିତ ଭଗବାନ୍‌ଙ୍କର ନାମ ଜପିବା ଦ୍ୱାରା ନିଜର ମହାନତା ପ୍ରକଟିତ ହୁଏ । ଭଗବାନ୍‌ଙ୍କର ନାମ ଜପର ମହିମା ଏତେ ଚମତ୍କାରୀ ଯେ— ତାହା ଦୀନ-ଦୁଃଖିଙ୍କର ଦୁଃଖ ଦୂର କରିପାରେ, ପାପିଙ୍କର ପାପ ହରଣ କରିପାରେ, ରୋଗୀର ରୋଗ ହରଣ କରିପାରେ, ଅଭକ୍ତକୁ ଭକ୍ତ କରିଦିଏ, ସର୍ବୋପରି ଶବ ଦେହରେ ପ୍ରାଣ ସଞ୍ଚାର କରିପାରେ । ଏହିସବୁ ସମ୍ଭବ ହେବାର ମୁଖ୍ୟ କାରଣ — ଆମେ ଭଗବାନ୍‌ଙ୍କର ନାମ ଜପ କରିବା ଦ୍ୱାରା ଆମର ପୁରୁଣା ସଂସ୍କାର ଦୂର ହୁଏ, ମନରେ ସୌମ୍ୟତା ଆସେ ଓ ଆତ୍ମବଳ ବୃଦ୍ଧି ହୁଏ ।

ଭଗବାନ୍‌ଙ୍କର ନାମ ଜପ କରିବା ଦ୍ୱାରା ଶରୀର ବାହାରେ ଓ ଭିତରେ ଏକ ଚୁମ୍ବକୀୟ ଶକ୍ତି ଖେଳେଇଯାଏ । ଯାହା ଫଳରେ ମନ ପବିତ୍ର ହେବାକୁ ଲାଗେ ଓ ଶରୀର ଶୁଦ୍ଧ ହୁଏ । ଦୁଃଖ, ଚିନ୍ତା, ଭୟ, ରୋଗ, ଶୋକ ଆଦି ଦୂର ହେବାକୁ ଲାଗେ । ସୁଖ, ସମୃଦ୍ଧି ଓ ସଫଳତା ମିଳିବାର ଅନୁଭୂତି ହୁଏ ।

ଭଗବାନ୍‌ଙ୍କର ନାମ ଜପକରି ନାରଦ, ପ୍ରହ୍ଲାଦ, ଧ୍ରୁବ, ହନୁମାନ, ଦାଶିଆ ବାଉରୀ, ସାଲବେଗ, କବିର୍ ଦାସ, ଗୁରୁ ନାନକ, ବିବେକାନନ୍ଦ, ମହାତ୍ମାଗାନ୍ଧି ଆଦି ମହାପୁରୁଷ ଗଣ ମହାନ୍ ଆତ୍ମାରେ ପରିଣତ ହୋଇପାରିଥିଲେ । ତେଣୁ ଭଗବାନ୍ କୃଷ୍ଣ ନିଜର ସଖା ଅର୍ଜୁନକୁ କହିଛନ୍ତି –

**କ୍ଷଣେ ନିମିଷେ ଦଣ୍ଡେ ମାତ୍ର । ମୋ ନାମ ଭଜୁଥିବୁ ନିତ୍ୟ ॥**

## ଶିବରାତ୍ରୀ ଓ ଶିବ ଉପାସନା



ଭାରତ କାହିଁକି ସମଗ୍ର ପୃଥିବୀରେ ଗୋଟିଏ ଧର୍ମ ହିନ୍ଦୁ ଧର୍ମ ହିଁ ଥିଲା ସେତେବେଳେ ଅନ୍ୟ କୌଣସି ଧର୍ମର ସୃଷ୍ଟି ହୋଇ ନ ଥିଲା । ତେଣୁ ହିନ୍ଦୁ ଧର୍ମକୁ ଅନାଦି ସନାତନ ଧର୍ମ କୁହାଯାଏ । ସେହି ପ୍ରାଚିନ କାଳରୁ ହିଁ ଶିବଙ୍କୁ ସୃଷ୍ଟିର ମୂଳ ରଚୟିତା ବୋଲି ଶିବ ଉପାସନାରେ ପ୍ରଚଳିତ ହୋଇ ଆସିଛି । ମହେଞ୍ଜୋଦାର, ହରପ୍ପା, ଚିନ୍ ଓ ମିଶର



ଦେଶର ପ୍ରାଚିନ କଥାରୁ ଆଦି ଦେବ ଶ୍ରୀ ଶିବ ଭଗବାନ୍‌ଙ୍କର ପୂଜା ଉପାସନା ପ୍ରଚଳିତ ଥିବାର ପ୍ରମାଣ ମିଳିଛି ।

ବୈଦିକ ଯୁଗରେ ମୂର୍ତ୍ତି ପୂଜାର ପ୍ରଚଳନ ନ ଥିଲା । କେବଳ ଯାଗଯଜ୍ଞ ଓ ସ୍ତୁତିଦ୍ୱାରା ଦେବୋପାସନା କରାଯାଉଥିଲା । ମୁନିଋଷିମାନେ ଧ୍ୟାନ ବଳରେ ଧ୍ୟାନମୂର୍ତ୍ତିଙ୍କର ବର୍ଣ୍ଣନା କରୁଥିଲେ । କିନ୍ତୁ ସାଧାରଣ ମନୁଷ୍ୟ ପାଇଁ ଏହା ସମ୍ଭବ ନ ଥିଲା । ତେଣୁ ପରବର୍ତ୍ତି କାଳରେ ମୁନିଋଷିମାନେ ସେମାନଙ୍କ ଦର୍ଶନ ଅନୁଭୂତି କ୍ରମରେ ଦେବାଦେବୀଙ୍କର ମୂର୍ତ୍ତି କଳ୍ପନା କରାଯାଇ ପ୍ରତିମା ପୂଜାର ପ୍ରସାରଣ ଘଟିଥିଲା ।

ମହାଶକ୍ତି ରୁଦ୍ରଙ୍କୁ ଦେବ, ଦାନବ, ମାନବ, ସମସ୍ତେ ଆରାଧନା କରି ଅସିମ ଶକ୍ତି ଲାଭ କରିଥାନ୍ତି । ଆଶୁତୋଷ ଶିବଙ୍କୁ ଉପାସନା କଲେ ଅସାଧ ସାଧନ ଓ ଅଭୟ ବରପ୍ରାପ୍ତ ହୁଏ ।

ଅନାଦି ଅନନ୍ତ ଶିବ ସକଳ ଶକ୍ତିର ଆଧାର ଅଟନ୍ତି । ସୃଷ୍ଟିକୁ ସନ୍ତୁଳିତ ଭାବେ ରଖିବା ପାଇଁ ଶିବ ନିଜର ଶକ୍ତିକୁ ତିନି ଭାଗରେ ବିଭକ୍ତ କରିଛନ୍ତି ଯଥା–

ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର **(Electron, Proton & Nutron)**।
ଏକ ଦେବଃ, ତ୍ରୟୋଦେବାଃ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଃ,
ବିଧିବିଷ୍ଣୁ ଶରଃସ୍ଥିତ ପାଦଯୁଗଂ ।
ପ୍ରଣମାମୀ ଶିବଂ ଶିବ କଳ୍ପତରୁ ।।

ଅର୍ଥାତ୍ ଯେଉଁ ଶିବ ନିଜେ ହିଁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଅଟନ୍ତି । ଯାହାଙ୍କର ପଦଦ୍ୱୟ ବ୍ରହ୍ମା ଓ ବିଷ୍ଣୁଙ୍କର ମସ୍ତକରେ ଅବସ୍ଥିତ, ସେହି ମଙ୍ଗଳଦାୟକ କଳ୍ପତରୁ ସ୍ୱରୂପ ଶିବଙ୍କୁ ପ୍ରଣାମ କରୁଛି ।

ସ୍ୱୟଂ ବ୍ରହ୍ମା ଓ ବିଷ୍ଣୁ ମଧ୍ୟ ଶିବଶକ୍ତିର ଆକଳନ କରିବାରେ ବିଫଳ ହୋଇଥିଲେ — ଏକଦା ବ୍ରହ୍ମା ଓ ବିଷ୍ଣୁଙ୍କ ମଧ୍ୟରେ କିଏ ବଡ଼ ବୋଲି ମତଭେଦ ସୃଷ୍ଟିହେଲା । ସେହି ମୁହୂର୍ତ୍ତରେ ସ୍ୱୟଂ ଶିବ ଜ୍ୟୋତିସ୍ତମ୍ଭ ରୂପରେ ବ୍ରହ୍ମା ଓ ବିଷ୍ଣୁଙ୍କ ସମ୍ମୁଖରେ ଆବିର୍ଭୂତ ହୋଇ ସେମାନଙ୍କର ସମସ୍ତ ଶକ୍ତିକୁ ନିଷ୍ପ୍ରଭ କରିଦେଇଥିଲେ ଓ କେତକୀ ପୁଷ୍ପ ସେତେବେଳେ ବ୍ରହ୍ମାଙ୍କ ସପକ୍ଷରେ ରହି ମିଥ୍ୟା ସାକ୍ଷୀ ଦେଇଥିଲେ । ତେଣୁ ଶିବ ଭଗବାନଙ୍କ ସେବାରେ କେତକି ପୁଷ୍ପ କେବଳ ଶିବରାତ୍ର ଦିନ ହିଁ ଲାଗିଥାଏ । ଫାଲ୍‌ଗୁନ ମାସ କୃଷ୍ଣପକ୍ଷ



ଚତୁର୍ଦ୍ଦଶୀ ରାତ୍ରି କାଳରେ ବ୍ରହ୍ମା ଓ ବିଷ୍ଣୁଙ୍କ ସମ୍ମୁଖରେ ପରମପିତା ପରମଆତ୍ମା ଶିବ ଜ୍ୟୋତିସ୍ତମ୍ଭ ରୂପରେ ଆବିର୍ଭୂତ ହୋଇଥିବାରୁ ସେହି କାଳରୁ ଶିବଙ୍କ ଜ୍ୟୋତିସ୍ତମ୍ଭ ରୂପକୁ ଲିଙ୍ଗରୂପେ ପୂଜା କରାଯାଉଛି ଏବଂ ସେହିଦିନ ଠାରୁ ପ୍ରତି ବର୍ଷ ଫାଲ୍‌ଗୁନ କୃଷ୍ଣ ଚତୁର୍ଦ୍ଦଶୀ ରାତ୍ରୀକୁ ଶିବରାତ୍ରୀ ନାମରେ ପାଳନ କରାଯାଉଛି । ଜାତି, ବର୍ଣ୍ଣ, ଲିଙ୍ଗ, ବୟସ ନିର୍ବିଶେଷରେ ନିର୍ଜଳ ଉପବାସ ପୂର୍ବକ ରାତ୍ରୀ ଉଜାଗରରେ ପ୍ରଦୀପ ପ୍ରଜ୍ୱଳନ କରି ଶିବରାତ୍ରୀ ବା ଜାଗର ବ୍ରତ ପାଳନ କରାଯାଏ ।

ସମସ୍ତ ଦେବା-ଦେବୀଙ୍କ ମୂର୍ତ୍ତିକୁ ପ୍ରତିମା କୁହାଯାଉଥିବାବେଳେ ଶିବଙ୍କ ଜ୍ୟୋତିସ୍ତମ୍ଭକୁ ଶିବଲିଙ୍ଗ ରୂପରେ ଶ୍ରଦ୍ଧାର ସହିତ ପୂଜା କରାଯାଉଛି । ଅର୍ଥାତ୍ ଲିଙ୍ଗ ହେଉଛି ଶିବଙ୍କର ପ୍ରତିକ ।

**ଆକାଶଂ ଲିଙ୍ଗ ମିତ୍ୟାହୁଃ**
**ପୃଥିବୀ ସତ୍ୟ ପୀଠିକା ।**
**ଆଳୟ ସର୍ବ ଦେବାନାଂ**
**ଲୟତାନ ଲିଙ୍ଗ ମୁଚ୍ୟତେ ।**

ଅର୍ଥାତ୍ ମହାକାଶ ବ୍ରହ୍ମଲିଙ୍ଗ ଏବଂ ପୃଥିବୀ ରୂପି ଜଗଦମ୍ବା ଏହାଙ୍କ ଆଳୟ ଅଟେ । ଜୀବମାତ୍ରେ ସମସ୍ତେ ଏଥିରେ ଲୀନ ହେଉଥିବାରୁ ଏହାର ନାମ ଲିଙ୍ଗ ଅଟେ । ଲୟ ବା ପ୍ରଳୟ (ଆରମ୍ଭ ଓ ଶେଷ) ଯେଉଁଠାରୁ ଉତ୍ପତ୍ତି ତାହା ହିଁ ଲିଙ୍ଗ ଅଟେ । ପ୍ରଳୟ କାଳରେ ସମଗ୍ର ସଂସାର ଜ୍ୟୋର୍ତିଲିଙ୍ଗରେ ବିଲିନ ହୋଇଯାଏ ଏବଂ ସୃଷ୍ଟିକାଳରେ ସେହି ଜ୍ୟୋତିର୍ଲିଙ୍ଗ ମଧ୍ୟରୁ ସୃଷ୍ଟି ସର୍ଜନା ହୋଇଥାଏ । ତେଣୁ ଶିବଙ୍କୁ ମହାକାଳ ବୋଲି ସମ୍ବୋଧିତ କରାଯାଏ ।

ଆଉ ଗୋଟିଏ ଖୁସିର କଥା — ଆମ୍ଭେମାନେ ଯେକୌଣସି ଦେବାଦେବୀଙ୍କୁ **'ଭଗବାନ'** ବୋଲି ସମ୍ବୋଧିତ କରିଥାଉ । ଏହି ଭଗବାନ୍ ଶବ୍ଦଟି ଦୁଇଟି ଶବ୍ଦର ସମାସ ଅଟେ, ଯଥା— ଭଗ ଓ ବାନ । ଭଗ ର ଅର୍ଥ ଜ୍ୟୋନୀ ଏବଂ ବାନ ର ଅର୍ଥ ଲିଙ୍ଗ ଅଟେ । ଲିଙ୍ଗ ଓ ଜ୍ୟୋନୀର ସମାସକୁ ହିଁ 'ଭଗବାନ' କୁହାଯାଏ, ଯାହାକି ଶିବଲିଙ୍ଗଙ୍କୁ ହିଁ ବୁଝାଏ । ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହେଉଛି ଯେ— ଶିବଲିଙ୍ଗ ସମସ୍ତ ଦେବାଦେବୀଙ୍କର ଆଳୟ ଅଟେ । ସ୍ତ୍ରୀ ହେଉ ବା ପୁରୁଷ, ଯେଉଁ ବ୍ୟକ୍ତି ନିଜର ଶିବ ଭଗବାନଙ୍କୁ ଯେତେ



ଆୟତ୍ତରେ ରଖିପାରୁଛି, ସେ ସମାଜରେ ସେତେ ଖ୍ୟାତି ସମ୍ପର୍ଣ୍ଣ ହୋଇପାରୁଛି । ନିଜର ଶିବ ଭଗବାନଙ୍କୁ ଯେଉଁ ବ୍ୟକ୍ତି ନିଜର ଆୟତ୍ତରେ ରଖିପାରୁ ନାହିଁ, ସେ ସମାଜରେ ପତିତ ଓ ଘୃଣାର ପାତ୍ର ହେଉଛି ।

ମାନବୀୟ ରୂପ କଳ୍ପନାରେ ଶିବ ଭଗବାନ ଭସ୍ମ ବିଲେପିତ ଶ୍ମଶାନ ବାସୀ, ବ୍ୟାଘ୍ରଚର୍ମ ପରିହିତ, ଜଟା ଜୁଟ ମଣ୍ଡିତ, ସୌଷ୍ଟବ ବଳିଷ୍ଠ ଶରୀରଧାରୀ ଅଟନ୍ତି । ଶିବଙ୍କ ଗଳାରେ ସର୍ପ, ହସ୍ତରେ ତ୍ରୀଶୁଳ, ଓ ଡମ୍ବରୁ ଏବଂ ମସ୍ତକରେ ଅର୍ଦ୍ଧଚନ୍ଦ୍ର ଶୋଭିତ ଅଟେ । ଶିବ ଭଗବାନ୍ ସମସ୍ତ ମନ୍ତ୍ର ଓ ଔଷଧର ଅଧିକାରୀ ବୈଦ୍ୟନାଥ ଅଟନ୍ତି । ସେ ନୀଳକଣ୍ଠ ଓ ମୃତ୍ୟୁଞ୍ଜୟ ଅଟନ୍ତି । ଜୀବ ଜଗତକୁ ଉଦ୍ଧାର କରିବା ପାଇଁ ସମୁଦ୍ର ମନ୍ଥନରୁ ବାହାରିଥିବା ଗରଳଙ୍କୁ ପାନକରି ସେ ସର୍ବଦା ବିଷଜ୍ୱାଳାରେ ଜର୍ଜରୀତ । ତେଣୁ ଭକ୍ତମାନେ ଶିବଙ୍କ ପ୍ରୀତ୍ୟାର୍ଥେ ଶିବଲିଙ୍ଗ ମସ୍ତକରେ ନବନୀତ ଘର୍ଷଣ ପୂର୍ବକ ଜଳାଭିଷେକ କରି ଶିବ କୃପା ଲାଭ କରିଥାନ୍ତି । ଶିବ ଭଗବାନ୍ କୈଳାସ ପର୍ବତରେ ସଦାବେଳେ ଯୋଗ ସାଧନା କରୁଥିବାରୁ ତାଙ୍କୁ କୈଳାସ ପତି ଓ ମହାଯୋଗେଶ୍ୱର ମଧ୍ୟ କୁହାଯାଏ ।

ମୃତ୍ୟୁଞ୍ଜୟ ଶିବ ମୃତ୍ୟୁମୁଖରେ ପଡ଼ିଥିବା ପ୍ରାଣୀଙ୍କୁ ପୁର୍ନଜୀବନ ପ୍ରଦାନ କରିଥାନ୍ତି । ତେଣୁ ବିପଦ ଆପଦ କାଳରେ ଭକ୍ତମାନେ ଶିବଙ୍କର ମହାମୃତ୍ୟୁଞ୍ଜୟ ସ୍ତୋତ୍ର ପାଠ କରିଥାନ୍ତି ।

ରାହୁ ଓ କେତୁଙ୍କ ଆକ୍ରମଣରୁ ରକ୍ଷା ପାଇବା ପାଇଁ ଚନ୍ଦ୍ର, ଶିବଙ୍କର ଶରଣାପନ୍ନ ହୋଇ ଶିବଙ୍କ ମସ୍ତକରେ ଆଶ୍ରୟ ନେଇଛନ୍ତି । ତେଣୁ ଶିବଙ୍କୁ ଚନ୍ଦ୍ରଶେଖର ମଧ୍ୟ କୁହାଯାଏ । ସେହିପରି ଗଙ୍ଗାଙ୍କର ସ୍ୱର୍ଗଲୋକରୁ ମର୍ତ୍ତ୍ୟାବତରଣ କାଳରେ ଶିବ ଗଙ୍ଗାଙ୍କର ପ୍ରଖର ସ୍ରୋତକୁ ମସ୍ତକରେ ଧାରଣ କରିଥିବାରୁ ସେ ଗଙ୍ଗାଧର ରୂପେ ପରିଚିତ ।

ଶିବଙ୍କର ପତ୍ନୀ ଜଗତ୍‌ଜନନୀ ମାତା ପାର୍ବତୀ ସୃଷ୍ଟିର ପରମ ଶକ୍ତି ରୂପେ ବିବେଚିତ ହୋଇ ୫୧ଟି ଶକ୍ତି ପିଠରେ ପୂଜିତ ହେଉଛନ୍ତି । ଲକ୍ଷ୍ମୀ, ସରସ୍ୱତୀ ଓ ପାର୍ବତୀ — ତିନିହେ ଏକ ଆତ୍ମା ଓ ଅଭିନ୍ନ ଅଟନ୍ତି । ଶିବଙ୍କର ଦୁଇ ପୁତ୍ର ଗଣେଶ ଓ କାର୍ତ୍ତିକେୟ ମଧ୍ୟ ଯଥାକ୍ରମେ ଜ୍ଞାନ ଓ ଶକ୍ତିର ପ୍ରତୀକ ଅଟନ୍ତି । ତେଣୁ ଶିବ ଉପାସନା କଲେ ଧନ, ଜନ, ଐଶ୍ୱର୍ଯ୍ୟ ଓ ଶକ୍ତି ଲାଭ ହୋଇଥାଏ ।



ଶିବଙ୍କର ବାହାନ ବୃଷଭ ଯିଏ କି ଧର୍ମର ପ୍ରତିକ ଅଟନ୍ତି ଓ ତାଙ୍କର ଶ୍ୱେତବର୍ଣ୍ଣ ଶରୀର ସାତ୍ତ୍ୱିକ ଗୁଣର ପ୍ରତିକ ଅଟେ । ବୃଷଭ ଶିବଙ୍କୁ ଏକ ଧ୍ୟାନରେ ଚାହିଁ ରହିଥାନ୍ତି । ଏହା ଆମକୁ ସୂଚାଇ ଦିଏ ଯେ — ବ୍ୟକ୍ତି ତା'ର କର୍ମରେ ଏକ ଧ୍ୟାନରେ ରହିଲେ ସେ କର୍ମରେ ସଫଳ ହୁଏ । ବୃଷଭର ଚାରିପାଦକୁ ଧର୍ମର ଚାରୋଟି ଗୁଣ — ଶୌଚ, ଜପ, ଦୟା ଓ ଦାନ କୁହାଯାଏ । ମନୁଷ୍ୟ ଏହି ଚାରୋଟି ଗୁଣ ଆଚରଣ କଲେ ଶିବଲୋକ ପ୍ରାପ୍ତ ହୁଏ ।

ଶିବଙ୍କର ପ୍ରିୟ ବିଲ୍ୱପତ୍ର ଲକ୍ଷ୍ମୀଙ୍କର ଦକ୍ଷିଣ ହସ୍ତ ପାପୁଲିରୁ ଜାତ ହୋଇଛି ଏବଂ ବିଲ୍ୱ ବୃକ୍ଷରେ ଶ୍ରୀଲକ୍ଷ୍ମୀ ଅବସ୍ଥାନ କରନ୍ତି । ତେଣୁ ଘରର ଦକ୍ଷିଣ ଦିଗରେ ବିଲ୍ୱଗଛ ଥିଲେ ନତୁବା ବିଲ୍ୱ ବୃକ୍ଷକୁ ପୂଜାର୍ଚ୍ଚନା କଲେ ଗୃହରେ ଲକ୍ଷ୍ମୀ ବୃଦ୍ଧି ହୁଏଏବଂ ଶିବଲିଙ୍ଗରେ ବିଲ୍ୱପତ୍ର ଅର୍ପଣ କଲେ ଶିବ ପ୍ରସନ୍ନ ହୁଅନ୍ତି ଓ ମନୁଷ୍ୟର ଧନ, ଜନ, ଐଶ୍ୱର୍ଯ୍ୟ ଓ ସୁଖଶାନ୍ତି ବୃଦ୍ଧି ହୁଏ । ତ୍ରୀଶାଖା ବିଲ୍ୱପତ୍ର ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କର ସ୍ୱରୂପ ଏବଂ ସତ୍, ରଜ୍ ଓ ତମର ଆଧାର ଅଟେ । ଶିବଙ୍କର ତ୍ରୀନେତ୍ର ସୂର୍ଯ୍ୟ, ଚନ୍ଦ୍ର ଓ

ଅଗ୍ନିଙ୍କର ପ୍ରତୀକ ଅଟେ । ତେଣୁ ତ୍ରୀନେତ୍ର, ତ୍ରୀଶୂଳ ଓ ତ୍ରୀଶାଖା ବିଲ୍ୱପତ୍ର ସମନ୍ୱିତ ଶିବଙ୍କୁ ଉପାସନା କଲେ ମନୁଷ୍ୟକୁ ଜନ୍ମ ଜନ୍ମାନ୍ତର ପାପରୁ ମୁକ୍ତି ମିଳେ । **ଓଁ ନମଃ ଶିବାୟ** ।

## ଜ୍ୟୋତିର୍ଲିଙ୍ଗର ମାହାତ୍ମ୍ୟ



ଅନେକଙ୍କ ମନରେ ଧାରଣା ହୁଏ ପ୍ରଭୁ ଶିବ ତ ଲିଙ୍ଗ ରୂପରେ ବିଦ୍ୟମାନ ଥାଇ ପ୍ରତି ଗ୍ରାମ ଓ ସହର ଗୁଡ଼ିକର ଶିବାଳୟରେ ପୂଜୀତ ହେଉଛନ୍ତି, ଫେରେ ଜ୍ୟୋର୍ତିଲିଙ୍ଗ ରୂପେ ଭାରତର ବାରଟି ସ୍ଥାନରେ କାହିଁକି ପ୍ରସିଦ୍ଧ ଅଟନ୍ତି ?

ପରମପିତା ପରମ ଆତ୍ମା ଶିବ ଅସୀମ ଓ ଅନନ୍ତ ଅଟନ୍ତି । ସେ ସତ୍ୟଂ,ଶିବଂ, ଶୁଭଂ ଓ ସୁନ୍ଦରଂ ଅଟନ୍ତି । ସେ ଦୟାର ଠାକୁର ଓ ପ୍ରେମର ଠାକୁର ଅଟନ୍ତି । ତାଙ୍କୁ ଟିକିଏ ଭକ୍ତି ଭାବରେ ଡାକିଲେ, ସେ



ତାଙ୍କର ଆଶୀର୍ବାଦର ମନ୍ଦାକିନୀରେ ଭକ୍ତର ଜୀବନକୁ ଧନ୍ୟ କରିଦିଅନ୍ତି । ସେ ସବୁଠି ପରିବ୍ୟାପ୍ତ ଆଦିମ ଠାକୁର । ତେଣୁ ତାଙ୍କର ନାମ ଅନେକ । ତାଙ୍କର ପଞ୍ଚାକ୍ଷରୀ ମନ୍ତ୍ର — ''ଓଁ ନମଃ ଶିବାୟ''ର ପଟ୍ଟାନ୍ତର ନାହିଁ ।

ସୃଷ୍ଟିର ଆରମ୍ଭରୁ ଆଜି ପର୍ଯ୍ୟନ୍ତ ଏହି ସମୟ ମଧ୍ୟରେ ଭଗବାନ୍ ଶିବ ଯେଉଁ ଯେଉଁ ସ୍ଥାନରେ ଦୁଷ୍ଟଙ୍କୁ ବିନାଶ କରିବା ପାଇଁ ଓ ଭକ୍ତଙ୍କୁ ଉଦ୍ଧାରିବା ପାଇଁ ସ୍ୱଦେହରେ ନିଜେ ଆବିର୍ଭୂତ ହୋଇ ଦୁଷ୍ଟ ନିବାରଣ — ସନ୍ଥ ଉଦ୍ଧାରଣ କରିଥିଲେ, ସେହି ସେହି ସ୍ଥାନରେ ପ୍ରଭୁ ଶିବ ଭକ୍ତଙ୍କ ଶ୍ରଦ୍ଧାରେ ଜ୍ୟୋତିର୍ଲିଙ୍ଗ ରୂପେ ପ୍ରକଟିତ ହେଲେ । ଭାରତର ବାରଟି ସ୍ଥାନରେ ଭଗବାନ୍ ଶିବ ନିଜେ ଆବିର୍ଭାବ ହୋଇଥିଲେ ବୋଲି ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ଭାବେ ପ୍ରସିଦ୍ଧି ଲାଭ କରିଛି । ବିଶ୍ୱାସ କରାଯାଉଛି ଯେ — ହିମାଚଳ ପ୍ରଦେଶର କାଙ୍ଗ୍ରା ଘାଟୀରେ ଯେପରି ପ୍ରସିଦ୍ଧ ଜ୍ୱାଳାମୁଖି ଦେବୀଙ୍କ ମନ୍ଦିର ଅଛି ଏବଂ ଭୂଗର୍ଭରୁ ସବୁବେଳେ ଜ୍ୟୋତି ନିର୍ଗତ ହେଉଛି, ସେହିପରି ପୂର୍ବକାଳରେ, ଆଜକୁ ଶହ ଶହ ବର୍ଷ ତଳେ ଏହି ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ପିଠର ପାର୍ଥିବ ଲିଙ୍ଗରୁ ଦିବ୍ୟ ଜ୍ୟୋତି ବାହାରୁଥିଲା । ତେଣୁ ଏସବୁକୁ ଜ୍ୟୋତିର୍ଲିଙ୍ଗ କୁହାଯାଉଛି । ଯେପରି ତପ୍ତପାଣିରେ

ବାହାରୁଥିବା ପାଣିର ଉର୍ଷ୍ଣତା ଆସ୍ତେ ଆସ୍ତେ କମିବାରେ ଲାଗିଛି ଓ ଆଉ କେତେ ବର୍ଷ ପରେ ଉର୍ଷ୍ଣତା ପୁରା କମିଯାଇପାରେ, ସେହିପରି ଜ୍ୟୋତିର୍ଲିଙ୍ଗ ଗୁଡ଼ିକରୁ କାଳକ୍ରମେ ଜ୍ୟୋତି ନିର୍ଗତହେବା ବନ୍ଦ ହୋଇଯାଇଛି । କିନ୍ତୁ ସେଠାରେ ପ୍ରଭୁ ଶିବଙ୍କର ପୂର୍ଣ୍ଣ ଅସ୍ତିତ୍ୱ ରହିଛି ।

ହିନ୍ଦୁ ଧର୍ମର ପଥ ପ୍ରଦର୍ଶକ ଆଦି ଶଙ୍କରାଚାର୍ଯ୍ୟ ଗୋଟିଏ ସୁନ୍ଦର ଶ୍ଳୋକରେ ପ୍ରଭୁଙ୍କ ପ୍ରାର୍ଥନା କରିଛନ୍ତି —

**ସୌରାଷ୍ଟ୍ରେ ସୋମନାଥଂ ଚ ଶ୍ରୀଶୈଳେ ମଲ୍ଲିକାର୍ଜୁନମ୍ ।**
**ଉଜ୍ଜୟିନ୍ୟାଂ ମହାକାଳଂ ଓଁକାର ମମଲେଶ୍ୱରମ୍ ॥**
**ପରଲ୍ୟା ବୈଦ୍ୟନାଥଂ ଚ ଡାକିନ୍ୟାଂ ଭୀମଶଙ୍କରମ୍ ।**
**ସେତୁବନ୍ଧେ ତୁ ରାମେଶଂ ନାଗେଶଂ ଦାରୁକାବନେ ॥**
**ବାରଣସ୍ୟା ତୁ ବିଶ୍ୱେଶଂ ତ୍ରୟମ୍ବକ ଗୌତମୀ ତଟେ ।**



**ହିମାଳୟେ ତୁ କେଦାରମ୍ ଘୃଷ୍ଣୁଣେଷଂ ଶିବାଳୟେ ॥**
**ଏତାନି ଜ୍ୟୋତିର୍ଲିଙ୍ଗାନାଂ ସାୟଂ ପ୍ରାତଃ ପଠେତ୍ ନରଃ ।**
**ସପ୍ତଜନ୍ମ କୃତଂ ପାପମ୍ ସ୍ମରଣେନ ବିନଶତି ॥**

## ରୁଦ୍ରାକ୍ଷର ବିଶେଷତା

ସଚରାଚର ଜୀବଜଗତର ମଙ୍ଗଳକାରୀ, ମଙ୍ଗଳମୟ ପ୍ରଭୁ ଭୋଳାନାଥ ଆଶୁତୋଷ ଶିବ ଜଗତକୁ ନିଜର ସବୁକିଛି ଦେଇ ଦେଇ ନିଜେ ଦିଗାମ୍ବର ହୋଇଗଲେ । ତଥାପି ମଧ୍ୟ ଏ ଜୀବ ଜଗତର ଦୁଃଖ ଶେଷ ହେଲାନାହିଁ । ଜୀବଜଗତର ଦୁଃଖ ଦେଖି ତାଙ୍କର ଚକ୍ଷୁରୁ ଲୋତକ ଝରି ପଡ଼ିଲା । ସେହି ଲୁହ ଭୂପୃଷ୍ଠରେ ଯେଉଁ ସ୍ଥାନ ଗୁଡ଼ିକରେ ପଡ଼ିଲା, ଚମତ୍କାର ଭାବେ ସେହି ସ୍ଥାନରେ ସୁଦିବ୍ୟ ବୃକ୍ଷ ଭୂମିରୁ ଜାତ ହେଲା । ରୁଦ୍ରଙ୍କର ଚକ୍ଷୁ ଲୁହରୁ ଜାତ ହୋଇଥିବାରୁ ସେହି ବୃକ୍ଷକୁ ରୁଦ୍ରାକ୍ଷ ବୃକ୍ଷ କୁହାଗଲା । ରୁଦ୍ରାକ୍ଷ ବୃକ୍ଷ

ଦେଖିବାକୁ ଅବିକଳ ଆମ୍ବଗଛ ପରି ଅଟେ । ରୁଦ୍ରାକ୍ଷ ବୃକ୍ଷର ଫଳରୁ ଯେଉଁ ଦାନା ବାହାରେ ତାକୁ ରୁଦ୍ରାକ୍ଷ କୁହାଯାଏ । ରୁଦ୍ରାକ୍ଷ ବୃକ୍ଷ ପ୍ରଥମେ ହିମାଳୟର ବିଭିନ୍ନ ସ୍ଥାନରେ ଦେଖାଗଲା ଏବଂ ପରେପରେ ନେପାଳ, ହରିଦ୍ୱାର, ଆସାମ୍, ମହାରାଷ୍ଟ୍ର, ଜାଭା ଓ ସୁମିତ୍ରାର ବହୁ ଜଙ୍ଗଲରେ ରୁଦ୍ରାକ୍ଷ ବୃକ୍ଷ ଦେଖିବାକୁ ମିଳୁଛି । ରୁଦ୍ରାକ୍ଷ ଏକ ମୁଖି ଠାରୁ ଚଉଦ ମୁଖି ପର୍ଯ୍ୟନ୍ତ ଦେଖିବାକୁ ମିଳେ । ଏହାର ଚମତ୍କାରୀ ଔଷଧୀୟ ଗୁଣ ଯୋଗୁଁ ଭିନ୍ନ ଭିନ୍ନ ରୁଦ୍ରାକ୍ଷ ଭିନ୍ନ ଭିନ୍ନ କାର୍ଯ୍ୟରେ ମାଳାରୂପେ ଓ ଜଡିବୁଟି ରୂପେ ବ୍ୟବହାର କରାଯାଏ । ରୁଦ୍ରାକ୍ଷର ମୁଖ ପ୍ରଦେଶରେ ବ୍ରହ୍ମା, ମଧ ଭାଗରେ ସ୍ୱୟଂ ସଦାଶିବ ଓ ପୃଷ୍ଠ ଭାଗରେ ଅବତାରୀ ପୁରୁଷ ଶ୍ରୀବିଷ୍ଣୁଙ୍କର ଅବସ୍ଥାନ ହୋଇଥିବାରୁ ରୁଦ୍ରାକ୍ଷର ମହିମା ଅସୀମ ବୋଲି ବହୁ ଶାସ୍ତ୍ରରେ ଲେଖାଅଛି । ରୁଦ୍ରାକ୍ଷକୁ ସ୍ୱୟଂ ଶିବଙ୍କର ପ୍ରତୀକ ବୋଲି ମଧ ମାନାଯାଏ । ବୈଜ୍ଞାନିକମାନେ କୁହନ୍ତି ରୁଦ୍ରାକ୍ଷରେ ଏକ ପ୍ରକାର ଚୁମ୍ବକୀୟ ଶକ୍ତି ରହିଛି । ରୁଦ୍ରାକ୍ଷର ଏହି ଅଦ୍ଭୁତ ବିସ୍ମୟକର ଗୁଣ ଓ ପବିତ୍ରତା ଯୋଗୁଁ ମନୁଷ୍ୟ ଶରୀରରେ ଧାରଣ କଲେ ଶାରିରୀକ ଓ ମାନସିକ ଶାନ୍ତି ମିଳେ ।



## ଜୀବନରେ ସାସ୍ୱତ ପ୍ରେମ ହିଁ ମହାମନ୍ତ୍ର

ପିତା-ପୁତ୍ର, ଭାଇ-ଭଉଣୀ, ମିତ୍ର-ସଂବନ୍ଧୀ, ପତି-ପତ୍ନୀ ସାସ୍ୱତ ପ୍ରେମ ସୂତ୍ରରେ ହିଁ ପରସ୍ପର ବାନ୍ଧି ହୁଅନ୍ତି । ତେଣୁ ସ୍ୱତଃ ଏବଂ ସହଜ ରୀତିରେ ଜଣେ ଜଣକୁ ସ୍ମୃତିରେ ରଖିପାରେ । ଭୂଲିବାକୁ ଚାହିଁଲେ ମଧ ପ୍ରିୟ ବ୍ୟକ୍ତିକୁ ମନୁଷ୍ୟ ଭୂଲିପାରେ ନାହିଁ । ଏହାକୁ ସାସ୍ୱତ ପ୍ରେମ କୁହାଯାଏ । ସାସ୍ୱତ ପ୍ରେମ ରୂପି ମନ୍ତ୍ର କୌଣସି ବିଶେଷ ଶବ୍ଦ ଦ୍ୱାରା ଗଠିତ ନୁହେଁ । ଏହାର ଭାଷା ହୃଦୟରୁ ହିଁ ଉଦ୍‌ଗିରଣ ହୋଇଥାଏ । ଯଦି ସାସ୍ୱତ ପ୍ରେମ ନାହିଁ ତେବେ ମନୁଷ୍ୟ ଜୀବନରେ ବ୍ୟର୍ଥତା ଓ ନିରାଶା ପ୍ରତିଫଳିତ ହୁଏ । ଏପରି ସମୟରେ ସେ ବିଭିନ୍ନ କୃତ୍ରିମ ସାଧନାର ଆଧାର ନେବାକୁ ଚାହେଁ । ଧରିନିଅନ୍ତୁ ଜଣେ ଝିଅ ଜଣେ ପୁଅକୁ ସମ୍ପୂର୍ଣ୍ଣ ରୂପେ ପ୍ରେମ କରିସାରିଛି । ଏହିପରି ସ୍ଥଳେ ଯଦି ସେ



ଝିଅକୁ ଅନ୍ୟ ପୁଅ (ଭଲେ ଦେବ ପୁରୁଷ ହେଉନା କାହିଁକି) ସହିତ ବିବାହ କରାଯାଏ, ତେବେ ସେହି ଝିଅଟି ଅଳ୍ପ ବର୍ଷ ପରେ ଫେରେ ତାର ଅତୀତ ପ୍ରେମିକକୁ ହିଁ ମନେପକାଏ ଓ ନିଜର ପାରିବାରିକ ଜୀବନକୁ ପାଦରେ ଦଳିଚକଟି ମାଟିରେ ମିଶାଇ ଦେବାକୁ ମଧ୍ୟ କୁଣ୍ଠାବୋଧ କରେନାହିଁ । ତେଣୁ ଲୋକେ କହନ୍ତି —

**ଦୁହିତା ଦୁଇକୁଳକୁ ହିତା । ଚରିତ୍ର ହଜିଲେ ଦୁଇକୁଳକୁ ପୀତା ॥**
**ଥିଲେ ଥାଉ ପଛେ ଗୁଣ ହଜାର । ଚରିତ୍ର ନଥିଲେ ସବୁ ଅସାର ॥**

ଏହାର ଅନେକ ଦୃଷ୍ଟାନ୍ତ ଆପଣମାନେ ସ୍ୱଚକ୍ଷୁରେ ଦେଖିଥିବେ ନତୁବା ଖବର କାଗଜରେ ପଢ଼ିଥିବେ । ଏଥିଯୋଗୁଁ ମଣିଷ ଦୁଃଖ ପାଏ । ଇଏ ତା'ର ସ୍ୱ ଅର୍ଜିତ କର୍ମଫଳ । କିନ୍ତୁ ମିଥ୍ୟାଜ୍ଞାନୀ ମାନବ ମନେକରେ ଯେ ସୁଖ ଓ ଦୁଃଖ ପରମାତ୍ମା ହିଁ ଦେଇ ଥାଆନ୍ତି । ଯଦି ଆମେ ରାଜଯୋଗ ସାଧନା କରିବା, ତେବେ ଜାଣିପାରିବା ଯେ— ପରମପିତା ପରମଆତ୍ମା ଶିବ ସର୍ବଦା କଲ୍ୟାଣକାରୀ, ସୁଖଦାତା ଓ ଶାନ୍ତିଦାତା ଅଟନ୍ତି । ପରମପିତା ଦୁଃଖ ହର୍ତ୍ତା-ସୁଖ କର୍ତ୍ତା ହୋଇଥିବାରୁ ସେ କାହାକୁ ଦୁଃଖ ଦିଅନ୍ତି ନାହିଁ ।



ଦୁଃଖ ହେଉଛି ମାନବ ଦ୍ୱାରା ସମ୍ପାଦନ ହେଉଥିବା ଇହଜନ୍ମର ନତୁବା ଗତଜନ୍ମର ପାପକର୍ମର ପରିଣାମ ମାତ୍ର । ତେଣୁ ଆମ୍ଭେମାନେ ଯେତେବେଳେ ଧ୍ୟାନ-ଜପ କରୁ, ସେତେବେଳେ ଆମ୍ଭମାନଙ୍କ ମଧ୍ୟରୁ କେହି କେହି ଶିଘ୍ର ଫଳ ପ୍ରାପ୍ତି ହୁଅନ୍ତି ତ କେହି କେହି ବିଳମ୍ବରେ ସିଦ୍ଧିପ୍ରାପ୍ତି ହୁଅନ୍ତି ଏବଂ ଆଉ କେତେଜଣଙ୍କର ଏ ଜନ୍ମରେ କାର୍ଯ୍ୟ ସିଦ୍ଧି ନ ହୋଇ ଅନ୍ତିମ ସମୟରେ ତା'ର କେବଳ ସଂସ୍କାର ହୋଇଥାଏ । ତେଣୁ ସେ ଆସନ୍ତା ଜନ୍ମରେ ଆରମ୍ଭରୁ ହିଁ ତାକୁ ସମସ୍ତ ସିଦ୍ଧି ପ୍ରାପ୍ତ ହୋଇଥାଏ ।



ଦ୍ୱିତୀୟ ଭାଗ

# ଆତ୍ମଲିଙ୍ଗ ସାଧନା

(ନିଜର ଚମତ୍କାରୀ ହୃଦୟ)







## ଆତ୍ମଲିଙ୍ଗ ଦର୍ଶନ



ପ୍ରାତଃ କାଳରୁ ଶଯ୍ୟା ତ୍ୟାଗକରି ଭଗବାନ୍‌ଙ୍କୁ ନମସ୍କାର କରନ୍ତୁ । ଦୈନନ୍ଦିନ ନିତ୍ୟକର୍ମ ସମାପନ କରନ୍ତୁ ।

ଏହି ଦ୍ୱିତୀୟ ଭାଗରେ ଯାହା ବର୍ଣ୍ଣନା କରାଯାଇଛି, ସବୁକିଛି ମାନସିକ ଜପ, ତପ, ପୂଜା ଅଟେ । ଅର୍ଥାତ୍ ଜଣେ ଅଧ୍ୟାତ୍ମିକ ଚିନ୍ତାଧାରା ସମ୍ପର୍ଣ୍ଣ ବ୍ୟକ୍ତି ଯେକୌଣସି ଅବସ୍ଥାରେ ଥାଉନା କାହିଁକି, ଏହି ଜପ, ତପ, ପୂଜା କର୍ମ ମନେ ମନେ କରିପାରିବ । ଏଥିପାଇଁ କୌଣସି ସୁଦ୍ଧି, ଅସୁଦ୍ଧିର ବିଚାର କରାଯାଏ ନାହିଁ । ଜଣେ ଭକ୍ତ ନିଜର ଭକ୍ତିକୁ ପ୍ରଭୂଙ୍କଠାରେ ନିବେଦନ କରିବା ପାଇଁ, ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ଏହି ମାନସିକ ଜପ, ତପ ଓ ପୂଜା କରିବା ଉଚିତ ।

ବ୍ରହ୍ମାଙ୍କର ମାନସ ପୁତ୍ର ତଥା ଶିବ ଓ ବିଷ୍ଣୁଙ୍କର ପରମ ଅଦ୍ୱିତୀୟ ଭକ୍ତ ନାରଦଙ୍କ ମତରେ ମାନସିକ (ମନେ ମନେ ଭାବିବା) ମନ୍ତ୍ର ଜପ ଓ ପୂଜା ଅତି ଶ୍ରେଷ୍ଠ ଯୋଗ ଅଟେ । ଏହି ଜପକୁ ଚଳଜପ କୁହାଯାଏ । ଏହି ଯୋଗ ଜଣେ ଭକ୍ତ ଯେକୌଣସି ସ୍ଥାନରେ ସ୍ନାନ (କାକ ସ୍ନାନ ମଧ୍ୟ ଚଳିବ) ଶୌଚ ସାରି ଏକାକ୍ଷରୀ ମନ୍ତ୍ରରେ ଆସନ ଶୁଦ୍ଧି ଓ ଭୂତଶୁଦ୍ଧି କରି ବସିବସି, ଠିଆହୋଇ କିମ୍ବା କାମ କରି କରି କିମ୍ବା ଚାଲିଚାଲି କରିପାରିବେ । କିନ୍ତୁ ଏହି ମାନସିକ ମନ୍ତ୍ର ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ କରିବେ । ଅଣସୁଧିଆ, ଛିଟ୍ରିକା ଇତ୍ୟାଦି ମାରାରେ ମଧ୍ୟ ଏହି ଯୋଗକୁ ବାରଣ କରାଯାଏ ନାହିଁ । କାରଣ ଯେ ପର୍ଯ୍ୟନ୍ତ ଜୀବ ଏ ଶରୀରରେ ଅଛି ସେ ପର୍ଯ୍ୟନ୍ତ ଏ ଶରୀର ଶିବ ଅଟେ ।

ଆପଣ ଯେଉଁ ଜାଗାରେ ବସିଥିବେ, ସେହି ସ୍ଥାନକୁ ଛୁଇଁ କୁହନ୍ତୁ - ଓଁ ହ୍ରୌଂ ଆସନ ଶୁଦ୍ଧିଃ ।

ତା'ପରେ ନିଜର ହୃଦୟକୁ ଛୁଇଁ କୁହନ୍ତୁ ଓ ହ୍ରୌଂ ଅନ୍ତଃ ଶୁଦ୍ଧିଃ । ଓଁ ହ୍ରୌଂ ବହିଃ ଶୁଦ୍ଧିଃ ।

ତା'ପରେ ଓଁ ପ୍ରାଣାୟାମ କରନ୍ତୁ । ରେଚକ (ନିଶ୍ୱାସ ଛାଡ଼ିବା) ସମୟରେ ଦୁଇଥର 'ଓଁ' ଜପନ୍ତୁ ।



ପୁରକ (ନିଶ୍ୱାସ ନେବା) ସମୟରେ ଚାରିଥର 'ଓଁ' ଜପନ୍ତୁ ଏବଂ କୁମ୍ଭକ (ନିଶ୍ୱାସ ଧରି ରଖିବା) ସମୟରେ ଚାରିଥର ଓଁ ଜପନ୍ତୁ ।

ଏହି ପ୍ରକ୍ରିୟା ତିନିଥର କରନ୍ତୁ ।

ବର୍ତ୍ତମାନ ନିଜ ଶରୀରକୁ ଗୋଟିଏ ମନ୍ଦିର ବୋଲି ଭାବନ୍ତୁ ଯେଉଁଠି ଶିବ-ପାର୍ବତୀଙ୍କ ସହିତ ତେତିଶୀ କୋଟି ଦେବତା ବାସ କରନ୍ତି । ଯେଉଁ କାରଣରୁ ପଣ୍ଡିତ ତଥା ବୈଜ୍ଞାନିକମାନେ କହନ୍ତି ଜୀବ ମାତ୍ରେ ହିଁ ଶିବ ଅଟେ ।

ପ୍ରଥମେ ନିଜ ଶରୀରର ଦକ୍ଷିଣ ଭାଗରେ ଥିବା ଗଣେଶ ଭଗବାନ୍‌ଙ୍କୁ ସ୍ତୁତି କରନ୍ତୁ ଏବଂ ମନେ ମନେ ବିଲ୍ୱପତ୍ର ଅର୍ପଣ କରନ୍ତୁ ।

**ଓଁ ଗଂ ଗଣପତୟେ ନମଃ । ଅବିଘ୍ନମସ୍ତୁଃ ।**
**ସର୍ବ କାର୍ଯ୍ୟେ ସୁସର୍ବଦା ।**

**ଓଁ ନମୋ ଗଣେଶ ବିଘ୍ନେଶ**
**ଗିରିଜା ନନ୍ଦନ ପ୍ରଭୋ ।**
**ସର୍ବ ବିଘ୍ନ ବିନାଶାୟ**
**ଗଣାଧି ପତୟେ ନମଃ ।**
**ଏକ ଦନ୍ତଂ ମହାକାୟଂ, କପିଳଂ ଗଜକର୍ଣ୍ଣକଂ ।**
**ଲମ୍ବୋଦରଂ ଚବିକଟଂ, ବିଘ୍ନରାଜଂ ବିନାୟକଂ ।**
**ଧୂମ୍ରକେତୂଂ ଗଣାଦକ୍ଷଂ, ଭାଲଚନ୍ଦ୍ରଂ ଗଜାନନଂ । ଓଁ ଗଂ ଗଣପତୟେ ନମଃ ।**

ଦ୍ୱିତୀୟରେ ନିଜ ଶରୀରର ପଶ୍ଚିମ ଭାଗରେ ଥିବା କାର୍ତ୍ତିକେୟ ଭଗବାନ୍‌ଙ୍କୁ ସ୍ତୁତି କରନ୍ତୁ ଏବଂ ମନେ ମନେ ବିଲ୍ୱପତ୍ର ଅର୍ପଣ କରନ୍ତୁ ।

ଓଁ କାର୍ତ୍ତିକେୟ ନମସ୍ତେତୁ ରୁଦ୍ରତେଜ ସମୁଧ୍ଵବ ଜିତେନ୍ଦ୍ରିୟ ନମସ୍ତେତୁ ସ୍ଥାଣାତୁର ନମୋନମଃ ।



ତୃତୀୟରେ ନିଜ ଶରୀରର ବାମ ଭାଗରେ ଥିବା ଦେବୀଗଣ ଯଥା ପାର୍ବତୀ, ଲକ୍ଷ୍ମୀ ଓ ସରସ୍ୱତୀଙ୍କୁ ଧ୍ୟାନ କରନ୍ତୁ ଏବଂ ମନେମନେ ପୁଷ୍ପହାର ଅର୍ପଣ କରନ୍ତୁ ।

**ଓଁ ନମୋ ମାତଃ ପାର୍ବତୀ ।**
**ଅନ୍ନପୂର୍ଣ୍ଣେ ସଦାପୂର୍ଣ୍ଣେ, ଶଙ୍କର ପ୍ରାଣ ବଲ୍ଲଭେ ।**
**ଜ୍ଞାନ ବିଭବ ସିଦ୍ଧାର୍ଥଂ, ଭିକ୍ଷାଂ ଦେହି ଚ ପାର୍ବତୀ ।।**
**ଓଁ ଐଂ ସରସ୍ୱତେ ନମଃ ।**
**ଓଁ ହ୍ରୀଂ ଶ୍ରୀଂ ଲକ୍ଷ୍ମୀଭୋ ନମଃ ।**
**ଶ୍ରୀ ମହାଲକ୍ଷ୍ମୀ ପ୍ରସନ୍ନଂ ।**
**ଓଁ ଶ୍ରୀଂ କ୍ଲୁଂ ଓଁ ଧନଦଂ ଧନଂ ଦେହି ମାଁଂ ।**

ଚତୁର୍ଥରେ ନିଜ ଶିରୀରର ପୂର୍ବ ଭାଗରେ ଥିବା ଦେବଗଣଙ୍କୁ ଧ୍ୟାନ କରନ୍ତୁ ଏବଂ ମନେମନେ ବିଲ୍ୱପତ୍ର ଅର୍ପଣ କରନ୍ତୁ ।

**ଓଁ ନମଃ ନନ୍ଦି ଭୃକୁଟି ମହାରାଜାୟ ।**
**ଓଁ ନମଃ ନାଗ ରାଜାୟ ।**
**ଓଁ ନମଃ ସୋମ ରାଜାୟ ।**
**ଓଁ ନମଃ ନବ ଗ୍ରହାଣାଂ ନମୋନମଃ ।**

ବର୍ତ୍ତମାନ ଶରୀର ରୂପି ମନ୍ଦିର ଭିତରେ ପ୍ରବେଶ କରନ୍ତୁ, ଘଣ୍ଟା ବାଦନ କରନ୍ତୁ, ବୃଷଭ ଦର୍ଶନ କରନ୍ତୁ ଏବଂ ହୃଦୟ କମଳରେ ଥିବା ଜ୍ୟୋତିର୍ଲିଙ୍ଗଙ୍କୁ ଦର୍ଶନ କରନ୍ତୁ -

ଘଣ୍ଟାମନ୍ତ୍ର - **ଓଁ କାରଂ ପୂର୍ବମୁଦ୍ଧୃତ୍ୟ, ଗଜଧ୍ୱନି ମତଃପରଂ ।**
**ମାତା ସ୍ୱାହେତି ମନ୍ତ୍ରେଣ ଘଣ୍ଟାମନ୍ତ୍ରଂ ଉଦାହୃତଂ ।।**

ବୃଷଭ ଦର୍ଶନ ଓ ଆତ୍ମଲିଙ୍ଗ ଦର୍ଶନ - **ଓଁ ନମଃ ଧର୍ମରୂପି ବୃଷଭାୟ ।**
**ତ୍ରୀପାଦଂ ସପ୍ତ ହସ୍ତଂଞ୍ଚ, ଚତ୍ୱାର ଶୃଙ୍ଗ ମେବଚ ।**
**ଦ୍ୱେ ଶିର୍ଷଚ ତ୍ରୀଧାବଧୂ , ମହାଦେବ ବୃଷଭ ମର୍ତ୍ତ୍ୟା ଆବିର୍ବେଶ ।।**



**ବୃଷ ଚଣ୍ଡମ୍ ବୃଷଂ ଦୃଷ୍ଟ୍ୱା ସୋମସୂତ୍ରଂ ପୁନର୍ବୃଷମ୍ ।**
**ଚଣ୍ଡଂଞ୍ଚ ସୋମସୂତ୍ରଂଞ୍ଚ ତତୋଶ୍ଚଣ୍ଡଂ ତତୋ ବୃଷଂ ।।**
**ବୃଷଶ୍ୟ ବୃଷଣଂ ସୃଶ୍ୱା ଶଙ୍କରସ୍ୟାବଲୋକନଂ ।**
**କୋଟି ଜନ୍ମାର୍ଜିତଂ ପାପମ୍ ତତକ୍ଷଣାତ୍ ଦେବ ନଶତି ।।**

**ଓଁ ପାପହଂ ପାପକର୍ମହଂ ପାପାତ୍ମା ପାପସମ୍ଭବଃ**
**ତ୍ରାହିମାଂ ତ୍ୱଂ ବିରୁପାକ୍ଷଂ ସର୍ବପାପମ୍ ହରୋହରଃ ।**
**ଶ୍ରୀ ବିଶ୍ୱନାଥ କରୁଣାକର ଶୂଳପାଣେ**
**ଶମ୍ଭୁ ଗିରିଶ ଶିବ ଶଙ୍କର ଚନ୍ଦ୍ରମୌଳେ ।**
**ଶ୍ରୀ ନୀଳକଣ୍ଠ ମଦନାନ୍ତକ ବିଶ୍ୱମୁର୍ତ୍ତେ**
**ଗୌରିପତେ ମହିନିଦ୍ଧେହି କୃପାକଟାକ୍ଷଂ ।**
**ବହ୍ମୋ ଉବାଚ । ନମୋ ବାମଦେବାୟ ।**

**ହେ ଶମ୍ଭୁ ହେ ଇଶ ହେ ପଶୁପତି ହେ ଶିବ**

**ହେ ଶୁଳି ହେ ମହେଶ୍ୱର ହେ ଇଶ୍ୱର ହେ ସର୍ବଇଶାନ**

**ହେ ଶଙ୍କର ହେ ଚନ୍ଦ୍ରଶେଖର ହେ ଭୂତେଷୁ**

**ହେ ଖଣ୍ଡପରଶୁ ହେ ଗିରିଶ ହେ ଗିରିଶମୁଢ଼**

**ହେ ମୃତ୍ୟୁଞ୍ଜୟ ହେ କୃତିବାସ ହେ ପିନାକିନୀ**

**ହେ ପ୍ରଥମାଧିପ ହେ ଉଗ୍ରକପର୍ଦ୍ଦି ହେ ଶ୍ରୀଖଣ୍ଡ**

**ହେ ସିତିଖଣ୍ଡ ହେ କପାଳଭୃତ ହେ ବାମଦେବ**

**ହେ ମହାଦେବ ହେ ବିରୂପାକ୍ଷ ହେ ତ୍ରୀଲୋଚନ**

**ହେ କୃଷାନୁରେତ ହେ ସର୍ବଜ୍ଞ ହେ ଧୂର୍ଜଟି**



**ହେ ନୀଲଲୋହିତ ହେ ହର ହେ ସ୍ମର**

**ହେ ହରଉର୍ଗୟ ହେ ତ୍ରୟମ୍ବକ ହେ ତ୍ରୀପୁରାନ୍ତକ**

**ହେ ଗଙ୍ଗାଧର ହେ ଅନ୍ଧକରିପୂ ହେ କ୍ରତ୍‌ଧ୍ୱଂସିନ୍**

**ହେ ବୃଷୋଧ୍ୱଜ ହେ ବ୍ୟୋମକେଶ ହେ ଉବୋଭିମ**

**ହେ ସ୍ଥାନରୁଦ୍ର ହେ ଉମାପତି ।**

**ଭୋ ପ୍ରଭୂ ଅହଂ ଜ୍ଞାନ ହିନଂ, ଭକ୍ତିହିନଂ କ୍ରିୟା ହିନଂ କ୍ଷମସ୍ୱ ପ୍ରଭୂ । ଓଁ ନମଃ ଶିବାୟ । ଓଁ ନମଃ ମାତ ପାର୍ବତୀ ।**

ଏଥର ମନଧ୍ୟାନକୁ ଶରୀର ରୂପି ମନ୍ଦିରରୁ ବାହାରକୁ ଆଣି ଆମ ପୂଣ୍ୟ ଭୂମି ଭାରତର ଭିନ୍ନ ଭିନ୍ନ ସ୍ଥାନରେ ଥିବା ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ଓ ଚାରିଧାମ ମନେମନେ ଦର୍ଶନ କରନ୍ତୁ ଏବଂ ମନେମନେ ବିଲ୍ୱପତ୍ର/ପୁଷ୍ପାଦି ଅର୍ପଣ କରନ୍ତୁ ।

## ଶ୍ରୀ ରାମେଶ୍ୱର ଓ ଶ୍ରୀରାମନାଥ ଧାମ ଦର୍ଶନ



[ **ସୂଚନା:** ଏହି ପ୍ରସିଦ୍ଧ ରାମେଶ୍ୱର ଧାମ ତାମିଲନାଡୁର ରାମନାଥ ପୁରମ୍ ଜିଲ୍ଲାରେ ସମୁଦ୍ର କୂଳରେ ଅବସ୍ଥିତ । ଏହା ଆରବ ସାଗର ଓ ବଙ୍ଗୋପ ସାଗରର ସଙ୍ଗମ ସ୍ଥଳି ଅଟେ । ଏହି ଜ୍ୟୋତିର୍ଲିଙ୍ଗ ତ୍ରେତୟା ଯୁଗରେ ସ୍ୱୟଂ ରାମଚନ୍ଦ୍ରଙ୍କ ଦ୍ୱାରା ସ୍ଥାପିତ ହୋଇଥିବାରୁ, ଏହାକୁ ଶ୍ରୀ ରାମେଶ୍ୱର ଜ୍ୟୋତିର୍ଲିଙ୍ଗ କୁହାଯାଉଛି । ଏଠାରେ ୨୪ଟି ତୀର୍ଥ କୁଣ୍ଡ ଅଛି ଏବଂ ପ୍ରତ୍ୟେକ ତୀର୍ଥ କୁଣ୍ଡର ପାଣିର ସ୍ୱାଦ ଅଲଗା ଅଲଗା ଅଟେ; କିନ୍ତୁ ଲୁଣି ନୁହେଁ । ]

**ଓଁ ନମଃ ରାମେଶ୍ୱରାୟ ।** ଏହି ମନ୍ତ୍ର ଜପି ଜପି ରାମେଶ୍ୱର କ୍ଷେତ୍ରରେ ଥିବା ପାପନାଶିନି ଜଳକୁଣ୍ଡ ଗୁଡ଼ିକର ପବିତ୍ର ଜଳରେ ମନେମନେ ସ୍ନାହାଁନ କରନ୍ତୁ । ମନେମନେ ଶ୍ରୀରାମେଶ୍ୱର ଜ୍ୟୋତିର୍ଲିଙ୍ଗ ଦର୍ଶନ



କରନ୍ତୁ ଓ ଗଙ୍ଗା ଜଳରେ ଅଭିଷେକ କରି ବିଲ୍ୱପତ୍ର ଅର୍ପଣ କରନ୍ତୁ । ଓଁ ନମଃ ରାମନାଥାୟ । ଏହି ମନ୍ତ୍ର ଜପିଜପି ଶ୍ରୀ ହନୁମାନଙ୍କୁ ଦର୍ଶନ କରନ୍ତୁ ଓ ଶ୍ରୀରାମ-ଲକ୍ଷ୍ମଣ-ସୀତାଙ୍କୁ ତୁଳସିମାଳା ଅର୍ପଣ କରନ୍ତୁ ।

## ଶ୍ରୀ ମଲ୍ଲିକାର୍ଜୁନ ଜ୍ୟୋତିର୍ଲିଙ୍ଗ ଦର୍ଶନ



[ **ସୂଚନା:** ଆନ୍ଧ୍ରପ୍ରଦେଶର କୁର୍ନୁଲ ଜିଲ୍ଲାର ଶ୍ରୀଶୈଳଂ ପର୍ବତର ଘଞ୍ଚ ଜଙ୍ଗଲ ଭିତରେ ଏହି ଜ୍ୟୋତିର୍ଲିଙ୍ଗ କ୍ଷେତ୍ର ଅବସ୍ଥିତ । ଏଠାରୁ ପୁଣ୍ୟ କ୍ରିଷ୍ଣାବେଣୀ ନଦୀର ଉତ୍ପତ୍ତି ହୋଇଛି । ଲୋକ ପ୍ରବାଦ ଅଛି ଯେ - ଏହି ଯୁଗରେ ମଧ୍ୟ ପ୍ରତି ମାସର ଅମାବାସ୍ୟା ଦିନ ଶିବ ଭଗବାନ୍ ଏବଂ ପୂର୍ଣ୍ଣିମା ଦିନ ମାତା ପାର୍ବତୀ କୈଳାସରୁ ଏଠାକୁ ଆସି ଭକ୍ତଙ୍କୁ ଆଶିର୍ବାଦ କରନ୍ତି । ]

**ଓଁ ନମଃ ମଲ୍ଲିକାର୍ଜୁନାୟ ।** ଏହି ମନ୍ତ୍ର ଜପି ଜପି ମନେମନେ ବୃଷଭ ଦର୍ଶନ କରନ୍ତୁ ଓ ଶ୍ରୀମଲ୍ଲିକାର୍ଜୁନ ଜ୍ୟୋତିର୍ଲିଙ୍ଗ ଦର୍ଶନ କରନ୍ତୁ, ଜଳ ଅଭିଷେକ କରି ବିଲ୍ୱପତ୍ର ଅର୍ପଣ କରନ୍ତୁ ।

## ଶ୍ରୀ ତିରୁପତି ଦର୍ଶନ



[**ସୂଚନା:** ଶ୍ରୀ ବିଷ୍ଣୁ ଭଗବାନ୍‌ଙ୍କୁ ତାମିଲ ଭାଷାରେ ଶ୍ରୀ ତିରୁପତି କୁହାଯାଏ । ଶ୍ରୀ ତିରୁପତି ମନ୍ଦିର ସ୍ୱର୍ଣ୍ଣରେ ନିର୍ମିତ ଓ ବିଶ୍ୱ ପ୍ରସିଦ୍ଧ ମନ୍ଦିର ଅଟେ । ଏହି ମନ୍ଦିରଟି ଆନ୍ଧ୍ରପ୍ରଦେଶର ଚିତ୍ତୋର ଜିଲ୍ଲାର ତିରୁମଲ ପାହାଡ଼ ଉପରେ ଅବସ୍ଥିତ । ଧାଡ଼ି ଲଗାଇ ଶ୍ରୀ ତିରୁପତି ଭଗବାନ୍‌ଙ୍କୁ ଦର୍ଶନ କରିବା ପାଇଁ ପ୍ରାୟ ୪୮ ଘଣ୍ଟା ଲାଗିଯାଏ । ଭକ୍ତମାନେ ଏଠାରେ ଥିବା ହୁଣ୍ଡିରେ ଏତେ ଗୁଡ଼ିଏ ସୁନା, ଟଙ୍କା, ପଇସା ପକାନ୍ତି ଯେ - ତାହା ଦିନ ରାତି ଗଣତି ଚାଲିଥାଏ ସରେନାହିଁ । ତେଣୁ ବିଶ୍ୱର ସବୁ ମନ୍ଦିରଠାରୁ ଅଧିକ



ସୁନାରୁପା ତିରୁପତି ମନ୍ଦିରରେ ରହିଅଛି । ଭଗବାନ୍ ବିଷ୍ଣୁଙ୍କର ବୈକୁଣ୍ଠପୁରୀରେ ଯାହାସବୁ ଜିନିଷ ଅଛି, ତିରୁପତି ମନ୍ଦିରରେ ସେହିସବୁ ଜିନିଷ ଥିଲାପରି ଲକ୍ଷ୍ୟ କରାଯାଉଛି ।]

**ଓଁ ନମଃ ଭେଙ୍କଟେଶ୍ୱରାୟ । ଓଁ ନମଃ ଗୋବିନ୍ଦାୟ । ଓଁ ନମଃ ନାରାୟଣାୟ ।**

ଏହି ମନ୍ତ୍ର ଜପି ଜପି ଶ୍ରୀ ହନୁମାନ ଓ ଶ୍ରୀଗରୁଡ଼ଙ୍କୁ ଦର୍ଶନ କରନ୍ତୁ ଏବଂ ତୁଳସୀ ଅର୍ପଣ କରନ୍ତୁ । ଶ୍ରୀ ଭେଙ୍କଟେଶ୍ୱରଙ୍କୁ ଦର୍ଶନ କରନ୍ତୁ ଓ ତୁଳସୀ ଅର୍ପଣ କରନ୍ତୁ । ଦକ୍ଷିଣ ଭାଗରେ ସରସ୍ୱତୀଙ୍କୁ ଦର୍ଶନ କରି - **ଓଁ ଐଂ ସରସ୍ୱତେ ନମଃ ।** ମନ୍ତ୍ର ଜପି ଶୁକ୍ଳ ପଦ୍ମଫୁଲ ଅର୍ପଣ କରନ୍ତୁ ।

ବାମ ଭାଗରେ ମହାଲକ୍ଷ୍ମୀଙ୍କୁ ଦର୍ଶନ କରନ୍ତୁ ଏବଂ ନିମ୍ନ ମନ୍ତ୍ର ଜପି ଜପି ଲାଲବର୍ଣ୍ଣର ପଦ୍ମଫୁଲ ଅର୍ପଣ କରନ୍ତୁ ।

**ଓଁ ହ୍ରୀଂ ଶ୍ରୀଂ ଲକ୍ଷ୍ମୀଭ୍ୟୋ ନମଃ । ଶ୍ରୀ ମହାଲକ୍ଷ୍ମୀ ପ୍ରସନ୍ନଂ ।**

**ଓଁ ଶ୍ରୀଂ କ୍ଲୁଂ ଓଁ ଧନଦଂ ଧନଂ ଦେହିମାଂ ।**

**ଓଁ ନମଃ ଭେଙ୍କଟେଶ୍ୱରାୟ ।**

## ଶ୍ରୀ ଭୀମଶଙ୍କର ଜ୍ୟୋତିର୍ଲିଙ୍ଗ ଦର୍ଶନ



[**ସୂଚନା:** ମହାରାଷ୍ଟ୍ରର ପୁଣେ ଜିଲ୍ଲାରେ ଥିବା ସହ୍ୟାଦ୍ରି ପର୍ବତରେ ଶ୍ରୀ ଭୀମ ଶଙ୍କର ଜ୍ୟୋତିର୍ଲିଙ୍ଗ ଅବସ୍ଥିତ । ଏହିଠାରୁ ଭୀମା ନଦୀର ଉତ୍ପତ୍ତି ହୋଇଅଛି । ଶଙ୍କର ଭଗବାନ୍ ଭିମକାୟ ରୁପଧାରଣ କରି ଭିମ ନାମକ ଏକ ଭୟଙ୍କର ଅସୁରକୁ ବଧକରି ଏଠାରେ ବିଶ୍ରାମ ନେବାପରେ ତାଙ୍କର ଶରୀରରୁ ସହସ୍ର ଧାରାରେ ଝାଳ ବହିବାକୁ ଲାଗିଲା । ଏହି ଝାଳ ନଦୀ ରୁପ ଧାରଣକରି ଭୀମ ନଦୀ ନାମରେ ପରିଚିତ ହେଲା । ଲୋକ ପ୍ରବାଦ ଅଛି ଯେ ପ୍ରତିଦିନ ରାତିରେ ବାଘ ଆସି ଭୀମଶଙ୍କର ଜ୍ୟୋତିର୍ଲିଙ୍ଗ ଦର୍ଶନ କରି ଚାଲିଯାଆନ୍ତି । ଏଠାରେ ଗୋରେଖନାଥଙ୍କର ଧୂନୀ ଆଶ୍ରମ ଅଛି ।]



**ଓଁ ନମଃ ଭିମଶଙ୍କରାୟ ।** ଏହି ମନ୍ତ୍ର ଜପି ଜପି ମନେ ମନେ ବୃଷଭ ଦର୍ଶନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ । ତା'ପରେ ଶ୍ରୀ ଭିମଶଙ୍କର ଜ୍ୟୋତିର୍ଲିଙ୍ଗ ଦର୍ଶନ କରନ୍ତୁ ଓ ଜଳ ଅଭିଷେକ କରି ବିଲ୍ୱପତ୍ର ଅର୍ପଣ କରନ୍ତୁ ।

## ଶ୍ରୀ ତ୍ରୟମ୍ବକେଶ୍ୱର ଜ୍ୟୋତିର୍ଲିଙ୍ଗ ଦର୍ଶନ



[**ସୂଚନା:** ମହାରାଷ୍ଟ୍ରର ନାସିକରେ ଥିବା ବ୍ରହ୍ମଗିରୀରେ ଏହି ପୂଣ୍ୟକ୍ଷେତ୍ର ଅବସ୍ଥିତ । ଗୌତମ ଋଷିଙ୍କର ତପଶକ୍ତି ବଳରେ ବ୍ରହ୍ମଗିରୀରୁ ଜୀବଜଗତର ମଙ୍ଗଳ ପାଇଁ ଗୋଦାବରୀ ନଦୀର ଉତ୍ପତ୍ତି ହୋଇଛି । ଗୌତମ ଋଷିଙ୍କର ତପସ୍ୟାରେ ସନ୍ତୁଷ୍ଟ ହୋଇ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଗୌତମ ଋଷିଙ୍କୁ ଦର୍ଶନଦେଇ ତ୍ରୟମ୍ବକେଶ୍ୱର ଜ୍ୟୋତିର୍ଲିଙ୍ଗ ରୂପେ ବିଦ୍ୟମାନ ହେଲେ । ଏହି ଜ୍ୟୋତିର୍ଲିଙ୍ଗକୁ ପ୍ରକୃତି ଦ୍ୱାରା ସଦାସର୍ବଦା ଜଳ ଅଭିଷେକ ହେଉଛି । ଏହି ଜ୍ୟୋତିର୍ଲିଙ୍ଗରୁ ବେଳେବେଳେ ସିଂହ ଗର୍ଜନ ଶୁଣାଯାଏ ଓ ନିଆଁର

ଝଲକ ଦୃଶ୍ୟମାନ ହୁଏ । ଏହି ସମୟରେ ଭକ୍ତମାନେ ଗୋ ଖୁରରେ ଅଭିଷେକ କରି ତ୍ର୍ୟମ୍ବକେଶ୍ୱରଙ୍କୁ ସନ୍ତୁଷ୍ଟ କରନ୍ତି । ଏଠାରେ କୁଶାବର୍ତ୍ତ ମହାତୀର୍ଥ ରହିଅଛି । ପ୍ରତି ବାରବର୍ଷରେ କୁଶାବର୍ତ୍ତ ମହାତୀର୍ଥରେ କୁମ୍ଭମେଳା ହୁଏ । ]

**ଓଁ ନମଃ ତ୍ର୍ୟମ୍ବକେଶ୍ୱରାୟ ।** ଏହି ମନ୍ତ୍ର ଜପି ଜପି ମନେମନେ ବୃଷଭ ଦର୍ଶନ କରି ବିଲ୍ୱପତ୍ର ଅର୍ପଣ କରନ୍ତୁ । ତା'ପରେ ତ୍ର୍ୟମ୍ବକେଶ୍ୱର ଜ୍ୟୋତିର୍ଲିଙ୍ଗ ଦର୍ଶନ କରି ବିଲ୍ୱପତ୍ର ଅର୍ପଣ କରନ୍ତୁ ।

## ଶ୍ରୀ ଘୃଷ୍ଣେଶ୍ୱର ଜ୍ୟୋତିର୍ଲିଙ୍ଗ ଦର୍ଶନ



[ **ସୂଚନା:** ଔରଙ୍ଗାବାଦର ୟେଲୁର ଗାଁରେ ଏହି ଜ୍ୟୋତିର୍ଲିଙ୍ଗ ଅବସ୍ଥିତ । ଏଠାରେ ପବିତ୍ର ବ୍ରହ୍ମ ସରୋବର ଅବସ୍ଥିତ । ]

**ଓଁ ନମଃ ଘୃଷ୍ଣେଶ୍ୱରାୟ ।** ଏହି ମନ୍ତ୍ର ଜପି ଜପି ମନେମନେ ବୃଷଭ ଦର୍ଶନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ । ତା'ପରେ ଘୃଷ୍ଣେଶ୍ୱର ଜ୍ୟୋତିର୍ଲିଙ୍ଗ ଦର୍ଶନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ ।



## ଶ୍ରୀ ବୈଦ୍ୟନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ



[ **ସୂଚନା:** ମହାରାଷ୍ଟ୍ରର ବିଡ୍ ଜିଲ୍ଲାର ପରଲି ଗାଁର ମେରୁ ପର୍ବତରେ ଶ୍ରୀ ବୈଦ୍ୟନାଥ ଜ୍ୟୋତିର୍ଲିଙ୍ଗ ଅବସ୍ଥିତ । ଏହି ଜ୍ୟୋତିର୍ଲିଙ୍ଗରେ ଧନ୍ୱନ୍ତରୀ ଓ ଅମୃତ ଥିବାରୁ ଏହାକୁ ସ୍ପର୍ଶ କରି ପୂଜାର୍ଚ୍ଚନା କଲେ ଶରୀରରୁ ସମସ୍ତ ରୋଗ ଦୂର ହୋଇଯାଏ ।

ଏହି ମେରୁ ପର୍ବତକୁ ନାଗନାରାୟଣ ପାହାଡ଼ ବୋଲି ମଧ କୁହାଯାଏ । ସତ୍ୟବାନ-ସାବିତ୍ରୀ କଥା ଏହି ପାହାଡ଼ରେ ଥିବା ବଟବୃକ୍ଷ ମୂଳେ ଘଟିଥିଲା । ]

**ଓଁ ନମଃ ବୈଦ୍ୟନାଥାୟ ।** ଏହି ମନ୍ତ୍ର ଜପି ଜପି ମନେମନେ ବୃଷଭ ଦର୍ଶନ କରି, ତୁଳସି ଅର୍ପଣ କରନ୍ତୁ ତା'ପରେ ଶ୍ରୀ ବୈଦ୍ୟନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ କରି, ତୁଳସୀ ଅର୍ପଣ କରନ୍ତୁ ।

## ଶ୍ରୀ ନାଗନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ



[ **ସୂଚନା:** ମହାରାଷ୍ଟ୍ରର ବିଡ଼ ଜିଲ୍ଲାର ଦାରୁକ ବନରେ ଜମିତଳେ ଶ୍ରୀ ନାଗନାଥ ଜ୍ୟୋତିର୍ଲିଙ୍ଗ ଉଭା ହୋଇଛନ୍ତି । ଜମି ଉପରେ ଥିବା ମନ୍ଦିରରେ ବୃଷଭକୁ ଦର୍ଶନ କରିବା ପରେ ଜମିତଳେ ଥିବା ମନ୍ଦିରକୁ ଯାଇ ଶ୍ରୀ ନାଗନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ କରାଯାଏ । ]

**ଓଁ ନମଃ ନାଗନାଥାୟ ।** ଏହି ମନ୍ତ୍ର ଜପି ଜପି ମନେମନେ ବୃଷଭ ଦର୍ଶନ କରନ୍ତୁ । ତା'ପରେ ଶ୍ରୀନାଗନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ ।



## ଶ୍ରୀ ସୋମନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ




[ **ସୂଚନା:** ଆରବ ସାଗର କୂଳରେ ଗୁଜରାଟ୍‌ର କାଠିଆବାଡ଼ର ପ୍ରଭାସ ପାଟଣା ଗାଁରେ ଚନ୍ଦ୍ର ଦେବତା ନିଜର କଷ୍ଟକୁ ଦୂର କରିବା ପାଇଁ ମହା-ମୃତ୍ୟୁଞ୍ଜୟ ମନ୍ତ୍ରରେ ଶ୍ରୀଶିବ ଭଗବାନ୍‌ଙ୍କର ଉପାସନା କରିଥିଲେ । ଦୀର୍ଘ ଛଅମାସ ପରେ ସାଧନାରେ ସନ୍ତୁଷ୍ଟ ହୋଇ ଶିବ ଭଗବାନ୍ ଚନ୍ଦ୍ରଦେବଙ୍କୁ ଦର୍ଶନ ଦେଇ ଜ୍ୟୋତିର୍ଲିଙ୍ଗ ରୂପ ଧାରଣ କଲେ । ସୋମ (ଚନ୍ଦ୍ର) ଦେବଙ୍କ ନାମାନୁସାରେ ଏହି ଜ୍ୟୋତିର୍ଲିଙ୍ଗ ଶ୍ରୀ ସୋମନାଥ ନାମରେ ପ୍ରସିଦ୍ଧ ଅଟେ । ଏହି ଜ୍ୟୋତିର୍ଲିଙ୍ଗ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ମଧ୍ୟରେ ଆଦ୍ୟ ଜ୍ୟୋତିର୍ଲିଙ୍ଗ ଅଟେ । ଛପନଟି ଖମ୍ବରେ ନିର୍ମିତ ଏହି ମନ୍ଦିରଟି ପ୍ରଥମେ ଚନ୍ଦ୍ରଙ୍କ ଦ୍ୱାରା ସ୍ୱର୍ଣ୍ଣରେ ତିଆରି ହୋଇଥିଲା । ତା'ପରେ ଲଙ୍କାର ରାବଣ ଦ୍ୱାରା ରୁପାରେ ନିର୍ମିତ ହେଲା । ତା'ପରେ ଭଗବାନ୍ ଶ୍ରୀକୃଷ୍ଣଙ୍କଦ୍ୱାରା

ମନ୍ଦିରଟି ଚନ୍ଦନ କାଠରେ ନିର୍ମିତ ହେଲା । ବର୍ତ୍ତମାନ ଯୁଗରେ ଇନ୍ଦୋରର ମହାରାଣୀ ଅହଲ୍ୟା ବାଇ ହୋଲକର ଏହି ମନ୍ଦିରକୁ ମାର୍ବଲ ପଥରରେ ସୁନ୍ଦରଭାବେ ତିଆରି କରିଛନ୍ତି ।]

**ଓଁ ନମଃ ସୋମନାଥାୟ ।** ଏହି ମନ୍ତ୍ର ଜପି ଜପି ମନେମନେ ବୃଷଭ ଦର୍ଶନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ । ତା'ପରେ ଶ୍ରୀ ସୋମନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ କରନ୍ତୁ ଏବଂ ବିଲ୍ୱପତ୍ର ଅର୍ପଣ କରନ୍ତୁ ।

## ଶ୍ରୀ ନାଗନାଥେଶ୍ୱର ଦର୍ଶନ



[**ସୂଚନା:** ଗୁଜୁରାଟ୍‌ର କାଠିଆବାଡ଼ିରେ ଆରବ ସାଗର କୁଳରେ ଥିବା ଦାରୁକ ବନରେ ଗୋଟିଏ ବିଶାଳ ଝିଲ୍ ମଧ୍ୟରେ ଶ୍ରୀ ନାଗନାଥ ଜ୍ୟୋତିର୍ଲିଙ୍ଗ ପ୍ରଥମେ ଦ୍ୱାପର ଯୁଗରେ ପଞ୍ଚୁପାଣ୍ଡବଙ୍କୁ ଦର୍ଶନ ଦେଇଥିଲେ । ବେଳେବେଳେ ଗୋଟିଏ ନାଗସାପ ଫଣାଟେକି ଏହି ଜ୍ୟୋତିର୍ଲିଙ୍ଗ ଉପରେ ଗୁଡ଼େଇ ହୋଇ ରହିଥିବାର ଦେଖିବାକୁ ମିଳେ ।]



**ଓଁ ନମଃ ନାଗନାଥାୟ ।** ଏହି ମନ୍ତ୍ର ଜପି ଜପି ବୃଷଭଙ୍କୁ ଦର୍ଶନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ ତା'ପରେ ଶ୍ରୀ ନାଗନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ ।

## ଶ୍ରୀ ମହାକାଳେଶ୍ୱର ଜ୍ୟୋତିର୍ଲିଙ୍ଗ ଦର୍ଶନ



[**ସୂଚନା:** ମଧ୍ୟପ୍ରଦେଶର ଉଜ୍ଜୟିନୀ ସହରରେ ଥିବା କ୍ଷିପ୍ରା ନଦୀ କୂଳରେ ଶ୍ରୀ ମହାକାଳେଶ୍ୱର ଜ୍ୟୋତିର୍ଲିଙ୍ଗ ଅବସ୍ଥିତ । ଉଜ୍ଜୟିନୀ ନଗର ମହାରାଜା ବିକ୍ରମାଦିତ୍ୟଙ୍କର ରାଜଧାନି ଥିଲା । ଶିବ ଭଗବାନ୍ ଜନକଲ୍ୟାଣ ପାଇଁ ମହାକାଳ ରୂପ ଧାରଣ କରି ଦୁଷଣ ନାମକ ଏକ ରାକ୍ଷସକୁ ଏଠାରେ ବଧ କରିଥିଲେ । ମହାକାଳ ଜ୍ୟୋତିର୍ଲିଙ୍ଗଙ୍କୁ ପ୍ରାତଃକାଳ ୪ଟାରେ ଜଳ ଅଭିଷେକ ଓ ଚିତା-ଭସ୍ମ ଲେପନ କରାଯାଇ ପୂଜା କରାଯାଏ । ଏଥିପାଇଁ ଭକ୍ତଙ୍କୁ ଗୋଟିଏ ଦିନ ଆଗରୁ ଟିକଟ କରିବାକୁ ପଡ଼ିଥାଏ । ଏହି ଜ୍ୟୋତିର୍ଲିଙ୍ଗ

ଏକ ଅଦ୍‌ଭୂତ ଚମତ୍କାରୀ ଜ୍ୟୋତିର୍ଲିଙ୍ଗ ଅଟେ ଯାହାର ଦର୍ଶନରେ ଭକ୍ତର ମନୋବାଞ୍ଛା ଅତି ଶୀଘ୍ର ପୂର୍ଣ୍ଣ ହୋଇଥାଏ । ଏହା ମୁଁ ନିଜେ ପ୍ରତ୍ୟକ୍ଷ ଭାବେ ଅନୁଭବ କରିପାରିଛି ।]

**ଓଁ ନମଃ ମହାକାଳେଶ୍ୱରାୟ ।** ଏହି ମନ୍ତ୍ର ଜପି ଜପି ମନେମନେ ବୃଷଭଙ୍କୁ ଦର୍ଶନ କରି ବିଲ୍ୱପତ୍ର ଅର୍ପଣ କରନ୍ତୁ । ତା'ପରେ ଶ୍ରୀ ମହାକାଳେଶ୍ୱର ଜ୍ୟୋତିର୍ଲିଙ୍ଗ ଦର୍ଶନ କରନ୍ତୁ ଏବଂ ବିଲ୍ୱପତ୍ର ଅର୍ପଣ କରନ୍ତୁ ।

## ଶ୍ରୀ ଓଁକାରେଶ୍ୱର ଜ୍ୟୋତିର୍ଲିଙ୍ଗ ଦର୍ଶନ



[**ସୂଚନା:** ମଧ୍ୟପ୍ରଦେଶର ବିନ୍ଧ୍ୟାଚଳ ପର୍ବତ ପରିସର ମଧ୍ୟରେ ଗୋଟିଏ ପଟୁ ନର୍ମଦାନଦୀ ପଶ୍ଚିମାଭିମୁଖୀ ହୋଇ ପ୍ରବାହିତ ହେଉଛି ଏବଂ ଅନ୍ୟ ପଟରୁ କାବେରୀ ନଦୀ ଆସି ନର୍ମଦା ନଦୀ ସହିତ ମିଶିଛି । ଏହି ସଙ୍ଗମସ୍ଥଳରେ ଶ୍ରୀ ଓଁକାରେଶ୍ୱର ଜ୍ୟୋତିର୍ଲିଙ୍ଗ ସ୍ଥାପିତ ହୋଇଛନ୍ତି । ଏହି ସଙ୍ଗମସ୍ଥଳରେ ଦୁଇ ନଦୀର



ଜଳଧାରାର ପ୍ରବାହ ଓଁ ପରି ଦେଖାଯାଏ । ପୁରାଣ ଯୁଗରେ ଶିବଭକ୍ତ ମନ୍ଧ୍ୟତା ରାଜାଙ୍କ ଦ୍ୱାରା ଏହି ଓଁକାରେଶ୍ୱର ଜ୍ୟୋତିର୍ଲିଙ୍ଗ ସ୍ଥାପିତ ହୋଇଥିଲା ।]

**ଓଁ ନମଃ ଓଁକାରେଶ୍ୱରାୟ ।** ଏହି ମନ୍ତ୍ର ଜପି ଜପି ମନେମନେ ବୃଷଭ ଦର୍ଶନ କରନ୍ତୁ ଓ ଓଁକରେଶ୍ୱର ଜ୍ୟୋତିର୍ଲିଙ୍ଗ ଦର୍ଶନ କରି ବିଲ୍ୱପତ୍ର ଅର୍ପଣ କରନ୍ତୁ ।

## ଶ୍ରୀ କେଦାରନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ




[**ସୂଚନା:** ହରିଦ୍ୱାରର ହରକି ପାଉଡିରେ ସ୍ନାନ କରିବା ପରେ ଏଠାରୁ ବସ୍ ଦ୍ୱାରା ଋଷିକେଶ, ଦେବ ପ୍ରୟାଗ, ରୁଦ୍ର ପ୍ରୟାଗ, ତ୍ରିଯୁଗି ନାରାୟଣ, ସୋନ ପ୍ରୟାଗ, ଦେଇ ଗୌରୀ କୁଣ୍ଡପାଖ ବସ୍‌ଷ୍ଟାଣ୍ଡରେ ପହଁଞ୍ଚିବାକୁ ହୁଏ ।

ଗୌରୀ କୁଣ୍ଡର ଗରମ ପାଣିରେ ସ୍ନାହାଁନ କରି ହିମାଳୟର ବରଫ ଆଚ୍ଛାଦିତ ୧୪ କି.ମି. ପାହାଡ଼ିଆ ଉଠାଣି ରାସ୍ତା ଚାଲିଚାଲି ଅତିକ୍ରମ କଲେ କେଦାରନାଥ ପଡ଼େ ।

ମୁଁ ଏହି ୧୪ କି.ମି. ରାସ୍ତା ବିଶ୍ରାମ ନ ନେଇ ଓଁ ନମଃ ଶିବାୟ, ଓଁ ନମୋ ମାତଃ ପାର୍ବତୀ; ଏହି ମନ୍ତ୍ର ଜପି ଜପି ଚାଲିଚାଲି କେଦାରନାଥରେ ସନ୍ଧ୍ୟା ୭.୩୦ ସମୟରେ ପହଞ୍ଚିଥିଲି । ସେଠାରେ ମନ୍ଦିର ପାଖ ଦୋକାନରେ ଯେମିତି ପହଁଞ୍ଚିଛି, ତିନିଜଣ ଯୁବକ କହିଲେ ଶିଘ୍ର ଭଗବାନ୍‌ଙ୍କୁ ଦର୍ଶନ କରିବାକୁ ଯାଆନ୍ତୁ ଏଥର ମନ୍ଦିରଦ୍ୱାର ବନ୍ଦହେବା ସମୟ ହୋଇଯାଉଛି । ମୁଁ ଟିକେ ଏପଟ ସେପଟହୋଇ ଗାଧୋଇବା ପାଇଁ ପଚାରିବାରୁ, ସେମାନେ କହିଲେ ଆପଣଙ୍କ ଶରୀରର ଅବସ୍ଥା ଯେପରି ହୋଇଛି, ଭକ୍ତି ବିଭୋଳିତ ହୋଇ ଆପଣ ଜାଣିପାରୁ ନାହାଁନ୍ତି । ଯଦି ସ୍ନାହାଁନ କରିବେ ତେବେ ଆପଣଙ୍କ ଶରୀର ନିଶ୍ଚଳ ହୋଇଯିବ । ଯେଉଁ ଭକ୍ତି ଓ ଶକ୍ତି ବଳରେ ଆପଣ ଏଠାରେ ପହଁଞ୍ଚିଲେ, ସେହି ଭକ୍ତି ଆପଣଙ୍କ ଶରୀରକୁ ଶୁଦ୍ଧି କରିସାରିଛି ଏବେ ଯାଇ ଶ୍ରୀକେଦାରନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ ଲାଭ କରନ୍ତୁ । ସେମାନଙ୍କ କଥାରେ ଶ୍ରୀ କେଦାରନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନଲାଭ କରି ମୁଁ ବିଚିତ୍ର ପ୍ରକୃତି କୋଳରେ ହଜି ଯାଇଥିଲି ।



ଅତି ଥଣ୍ଡା ଯୋଗୁଁ ମୋର ଗୋଡ଼ ହାତର ଆଙ୍ଗୁଠିଗୁଡ଼ିକ ସିଧା ହେଉ ନ ଥାଏ । ସତରେ ମୋତେ ଭୋକ/ଶୋଷ ହେଉ ନ ଥିଲା କିମ୍ବା ଦେହରୁ ଝାଳଗନ୍ଧ ବାହାରୁ ନ ଥିଲା କିମ୍ବା ଝାଡ଼ା ପରିସ୍ରା ପାଇଁ ମଧ୍ୟ ଅନୁଭବ ଲାଗୁ ନ ଥିଲା । ଏବେ ମୁଁ ଭାବୁଛି ସେ ସମୟରେ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ଓ ଚାରିଧାମ ଦର୍ଶନରେ ମୋର ଶରୀରଟା ଏକ ଚମତ୍କାର ହୋଇଯାଇଥିଲା ।

ହରିଦ୍ୱାରର କନ୍‌ଖଲରେ ଶିବ ଭଗବାନ୍ ଦକ୍ଷ ପ୍ରଜାପିତାଙ୍କ କନ୍ୟା ଉମାଙ୍କୁ ବାହା ହୋଇଥିଲେ । କିନ୍ତୁ ତ୍ରିଯୁଗି ନାରାୟଣରେ ଶିବ-ପାର୍ବତୀଙ୍କର ବାହାଘର ହୋଇଥିଲା ।

ସତ୍ୟ ଯୁଗରେ ଭଗବାନ୍ ବିଷ୍ଣୁଙ୍କର ଅବତାର ନର-ନାରାୟଣ ନାମକ ଦୁଇ ତପସ୍ୱି ହିମାଳୟର ବରଫ ଅଚ୍ଛାଦିତ କେଦାର ପାହାଡ଼ରେ କଠୋର ତପସ୍ୟା କରି ଶ୍ରୀ ଶିବ ଭଗବାନ୍‌ଙ୍କର ଦର୍ଶନ ଲାଭ କରିଥିଲେ ଏବଂ ଦୁଇ ଭାଇଙ୍କ ଅନୁରୋଧରେ ଶିବ ଭଗବାନ୍ ମାତା ପାର୍ବତୀଙ୍କ ସହିତ ଶ୍ରୀ କେଦାରନାଥ

ଜ୍ୟୋତିର୍ଲିଙ୍ଗ ରୂପେ ସବୁଦିନ ପାଇଁ ବିରାଜିତ ହେଲେ । ଦ୍ୱାପର ଯୁଗରେ ଭଗବାନ୍ ଶ୍ରୀକୃଷ୍ଣ ଓ ପାଣ୍ଡବମାନେ ଶ୍ରୀକେଦାରନାଥ ମନ୍ଦିର ନିର୍ମାଣ କରିଥିଲେ । ମନ୍ଦିର ପଛପଟେ ଆଦି ଶଙ୍କରାଚାର୍ଯ୍ୟଙ୍କ ସମାଧିପିଠ ଅଛି ।

ବର୍ଷର ଅଧିକାଂଶ ସମୟ ମନ୍ଦିର ହିମ ଆଚ୍ଛାଦିନ ରହୁଥିବାରୁ, ବୈଶାଖ ମାସଠାରୁ ଆଶ୍ୱିନ ମାସ ପର୍ଯ୍ୟନ୍ତ କେବଳ ଛଅମାସ ହିଁ ଭକ୍ତମାନେ ଏଠାକୁ ଆସନ୍ତି ଏବଂ ବର୍ଷର ଅନ୍ୟ ଛଅମାସ ମନ୍ଦିର ବନ୍ଦ ରହେ । ]

**ଓଁ ନମଃ କେଦାର ନାଥାୟ ।** ଏହି ମନ୍ତ୍ର ଜପି ଜପି ମନେମନେ ବୃଷଭ ଦର୍ଶନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ ତା'ପରେ ଶ୍ରୀକେଦାରନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ କରନ୍ତୁ ଓ ମନେମନେ ଜ୍ୟୋତିର୍ଲିଙ୍ଗରେ ଘିଅ ବୋଳି ବିଲ୍ୱପତ୍ର ଅର୍ପଣ କରନ୍ତୁ ।



## ଶ୍ରୀ ପଶୁପତିନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ



[**ସୂଚନା:** ନେପାଳର ରାଜଧାନୀ କାଠମଣ୍ଡୁ ସହରରେ ପ୍ରବାହିତ ବାଗ୍‌ମତୀ ନଦୀ କୂଳରେ ଶ୍ରୀ ପଶୁପତିନାଥ ଜ୍ୟୋତିର୍ଲିଙ୍ଗ ଆବିର୍ଭୂତ ହୋଇଛନ୍ତି । ଲୋକପ୍ରବାଦ ଅଛି - ଏହି ଜ୍ୟୋତିର୍ଲିଙ୍ଗ ଶ୍ରୀ କେଦାରନାଥ ଜ୍ୟୋତିର୍ଲିଙ୍ଗଙ୍କର ଅଂଶ ବିଶେଷ ଅଟେ । କାଠମଣ୍ଡୁ ଯିବାକୁ ହେଲେ ବିହାର୍‌ର ରକ୍‌ସୋଲ୍ ଗେଟ୍ ଦେଇ ନେପାଳ ବୋର୍ଡ଼ର୍‌କୁ ଯିବାକୁ ପଡ଼େ । ନେପାଳ ବୋର୍ଡ଼ର୍‌ର ବୀରଗଞ୍ଜ ଠାରୁ ବସ୍ ଯୋଗେ ଯାଇ କାଠମଣ୍ଡୁର ଗୋଶାଳା (ଧର୍ମଶାଳା) ଠାରେ ଓହ୍ଲାଇ, ଗୋଶାଳାରେ ସ୍ନାହାଁନ-ଶୌଚ, ନିତ୍ୟକର୍ମ ସାରନ୍ତୁ । ଗୋଶାଳା ଠାରୁ ଶ୍ରୀ ପଶୁପତିନାଥ ମନ୍ଦିର ମାତ୍ର ଦଶ ମିନିଟ୍‌ର ପାଦଚଲା ରାସ୍ତା ।

କାଠମଣ୍ଡୁର ଆଉ ଗୋଟିଏ ପୂଣ୍ୟକ୍ଷେତ୍ର ହେଉଛି ସ୍ୱୟମ୍ଭୁନାଥ । ଏଠାରେ ଭଗବାନ୍ ବୁଦ୍ଧ ସ୍ୱୟମ୍ଭୁନାଥ ରୂପେ ପୂଜା ପାଉଛନ୍ତି । ]

**ଓଁ ନମଃ ପଶୁପତିନାଥାୟ ।** ଏହି ମନ୍ତ୍ର ଜପି ଜପି ମନେମନେ ବୃଷଭ ଦର୍ଶନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ । ତା'ପରେ ଶ୍ରୀ ପଶୁପତିନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ ।

## ଶ୍ରୀ ବଦ୍ରିନାଥ ଧାମ ଦର୍ଶନ



[ **ସୂଚନା:** ଶ୍ରୀ କେଦାରନାଥଙ୍କୁ ଦର୍ଶନ କରିବା ପରେ ଶ୍ରୀ ବଦ୍ରିନାରାୟଣଙ୍କୁ ଦର୍ଶନ କରିବା ଉଚତ ।

ଗୌରୀକୁଣ୍ଡ ପାଖ ବସ୍‌ଷ୍ଟାଣ୍ଡରୁ ବସ୍‌ଯୋଗେ ଗୁପ୍ତକାଶୀ, ଚାମୋଲି, ଯୋଶୀମଠ, ବିଷ୍ଣୁ ପ୍ରୟାଗ ଦେଇ ଶ୍ରୀ ବଦ୍ରିନାଥ ଧାମ ବସ୍‌ଷ୍ଟାଣ୍ଡରେ ପହଞ୍ଚିବାକୁ ହୁଏ ।



ଏହି ସ୍ଥାନଟିକୁ ସତ୍ୟ ଯୁଗରେ ଭଗବାନ୍‌ଙ୍କ ଅବତାର ନର-ନାରାୟଣ ଋଷି ଦ୍ୱୟ, ତ୍ରେତୟା ଯୁଗରେ ଭଗବାନ୍ ଶ୍ରୀରାମଚନ୍ଦ୍ର, ଦ୍ୱାପର ଯୁଗରେ ବେଦବ୍ୟାସ ଏବଂ କଳୀଯୁଗରେ ଆଦି ଶଙ୍କରାଚାର୍ଯ୍ୟ ତପସ୍ୟାସ୍ଥଳି ରୂପେ ଚୟନ କରିଥିଲେ ।

ବସ୍‌ଷ୍ଟାଣ୍ଡରୁ ଏକ କିଲୋମିଟର ଚାଲିବାପରେ ଅଲ୍‌କାନନ୍ଦା ନଦୀର ବାମପଟେ ଶ୍ରୀ ବଦ୍ରିନାରାୟଣଙ୍କ ମନ୍ଦିର ପଡ଼େ । ମନ୍ଦିର ପାଖରେ ତପ୍ତପାଣି କୁଣ୍ଡରେ ଭକ୍ତମାନେ ଗାଧୋଇବା ପରେ ଭଗବାନ୍‌ଙ୍କୁ ଦର୍ଶନ କରନ୍ତି ।

ଆଗକାଳରେ ଏହି ଧାମରେ ପହଞ୍ଚିବାକୁ ହେଲେ ବହୁତ କଷ୍ଟ ସହିବାକୁ ପଡୁଥିଲା । କିଛି ଗାଡ଼ିଘୋଡ଼ାର ବ୍ୟବସ୍ଥା ନ ଥିଲା । ଭକ୍ତମାନେ ଚାଲିଚାଲି ବହୁତ କଷ୍ଟ ସହି ଏଠାରେ ପହଞ୍ଚୁଥିଲେ । ତେଣୁ ଲୋକେ କହୁଥିଲେ -

**ଯେବେ ଯିବୁ ବଦରୀ । ନ ଆଇବୁ ଉଦୁରୀ ॥**

କିନ୍ତୁ ଏଣିକି ଉତ୍ତରାଖଣ୍ଡ ରାଜ୍ୟ ସରକାରଙ୍କ ଦ୍ୱାରା ଯାତ୍ରୀମାନଙ୍କ ଗମନାଗମନର ସମସ୍ତ ସୁବିଧା କରାଯାଇଛି । ଆଉ କୌଣସି ଅସୁବିଧା ନାହିଁ । ସତରେ ମୁଁ ଏଠାରେ ଆରାମରେ ପହଞ୍ଚିବା ପରେ ତପ୍ତକୁଣ୍ଡରେ ଗାଧୋଇ ପ୍ରଭୂ ବଦ୍ରିନାଥଙ୍କୁ ଦର୍ଶନ କରି ଆନନ୍ଦରେ ବିଭୋର ହୋଇଯାଇଥିଲି । ସେତେବେଳେ ମୋର ମନେ ପଡ଼ିଯାଇଥିଲା ମହାଭାରତ ପୁରାଣ କଥା, ପଞ୍ଚୁପାଣ୍ଡବ ଏହି ରାସ୍ତା ଦେଇ ସ୍ୱର୍ଗାରୋହଣ କରିଥିଲେ ।

ଆମର ଶରୀକୁ ନର ଏବଂ ଶରୀର ଭିତରେ ଥିବା ଆତ୍ମାକୁ ନାରାୟଣ କୁହାଯାଏ । ଅର୍ଥାତ୍ ଏହି ଧାମରେ ଭଗବାନ୍ ବିଷ୍ଣୁ ଧ୍ୟାନମଗ୍ନ ହୋଇ ପଦ୍ମାସନରେ ବସି ନରରୁ ନାରାୟଣ ହୋଇଯାଇଛନ୍ତି ।

ବଦ୍ରିନାଥ ଧାମରୁ ଫେରିବାବେଳେ ବସ୍‌ଯୋଗେ ଯୋଶୀମଠ, ଚାମୋଲି, ନନ୍ଦ ପ୍ରୟାଗ, କର୍ଣ୍ଣ ପ୍ରୟାଗ, ରଦ୍ର ପ୍ରୟାଗ, ଶ୍ରୀ ନଗର ଏବଂ ଦେବ ପ୍ରୟାଗ ଦେଇ ରଷିକେଶରେ ଫେରେ ପହଞ୍ଚିବାକୁ ହୁଏ ।]



**ଓଁ ନମଃ ବଦ୍ରିନାଥାୟ । ଓଁ ନମଃ ଭଗବତେ ବାସୁଦେବାୟ ।** ଏହି ମନ୍ତ୍ର ଜପି ଜପି ମନେ ମନେ ଶ୍ରୀ ହନୁମାନଙ୍କୁ ଓ ଶ୍ରୀ ଗରୁଡ଼ଙ୍କୁ ଦର୍ଶନ କରନ୍ତୁ ଏବଂ ତୁଳସୀ ଅର୍ପଣ କରନ୍ତୁ । ତା'ପରେ ଶ୍ରୀ ବଦ୍ରିନାରାୟଣଙ୍କୁ ଓ ମହାଲକ୍ଷ୍ମୀଙ୍କୁ ଦର୍ଶନ କରି ତୁଳସୀ ଅର୍ପଣ କରନ୍ତୁ ।

## ମାତା ଶ୍ରୀ ବୈଷ୍ଣବ ଦେବୀଙ୍କ ଦର୍ଶନ



[**ସୂଚନା:** ଦିଲ୍ଲିରୁ ଟ୍ରେନ୍ ଯୋଗେ ଜାମ୍ମୁତବି ଷ୍ଟେସନ୍‌ରେ ପହଁଞ୍ଚିବା ପରେ ପାଖରେ ଥିବା ବସ୍‌ଷ୍ଟାଣ୍ଡରୁ ବସ୍‌ଯୋଗେ କଟରା ଯିବାକୁ ପଡ଼େ । କଟରା ବସ୍‌ଷ୍ଟାଣ୍ଡରୁ ପ୍ରାୟ ୧୬ କିଲୋମିଟର ସିମେଣ୍ଟ ତିଆରି ରାସ୍ତାରେ ଚାଲିଚାଲି ହିମାଳୟର ତ୍ରିକୂଟ ପର୍ବତର ଶିଖର ଦେଶରେ ପହଞ୍ଚିଲେ ମାତା ବୈଷ୍ଣବ ଦେବୀଙ୍କର ପବିତ୍ର ଦିବ୍ୟ ପିଣ୍ଡି ଓ ଗୁମ୍ଫାର ଦର୍ଶନ ମିଳେ ।

ମା'ଙ୍କର ଡ଼ୋର ଯେଉଁ ଭକ୍ତ ଉପରେ ଲାଗିଯାଏ, ସିଏ ଆରାମରେ ଏହି ପାହାଡ଼ ଚଢ଼ିଯାଏ । ମୋତେ ଆଶ୍ଚର୍ଯ୍ୟ ଲାଗୁଥାଏ ମୋର ୮ ରୁ ୧୨ ବର୍ଷର ପୁଅମାନେ (ବୈଦ୍ୟନାଥ, ପଦ୍ମନାଥ ଓ ମନୁମହର୍ଷି) ନିଜକୁ ଟ୍ରେନ୍‌ର ଇଞ୍ଜିନ୍ କହି ଆମର ଆଗେ ଆଗେ ଧାଇଁ ଧାଇଁ ଚାଲୁଥାନ୍ତି ଏବଂ ସେମାନଙ୍କ ମଥାରେ ଜୟ ମାତାଦି ଡ଼ୋର ଶୋଭା ପାଉଥାଏ ।

ମାତା ମହାକାଳୀ, ମାତା ମହାଲକ୍ଷ୍ମୀ, ମାତା ମହାସରସ୍ୱତୀଙ୍କର ମିଳିତ ଶକ୍ତିକୁ ବୈଷ୍ଣବ ଦେବୀ ମାତାରୂପେ ପୂଜା କରାଯାଏ । ମାତା ବୈଷ୍ଣବ ଦେବୀ ମହିମା ଅପାର, ସେ ପ୍ରତ୍ୟକ୍ଷ ଦେବୀ ଅଟନ୍ତି । ଏହି କଥା ମୁଁ ଲୋକ ତୁଣ୍ଡରୁ ଶୁଣିଥିଲି । କିନ୍ତୁ ଏହାର ପ୍ରମାଣ ମୁଁ ଏବେ ପ୍ରତ୍ୟକ୍ଷଭାବେ ପାଇସାରିଛି ।

ମୋର ବଡ଼ପୁଅ ବୈଦ୍ୟନାଥ ମିଳିମିଳା (Sickling Disease) ରୋଗରେ ଆକ୍ରାନ୍ତ ହୋଇଥିଲା । ବହୁତ ଡାକ୍ତରଙ୍କୁ ଦେଖାଇଥିଲି । ବ୍ରହ୍ମପୁର ବଡ଼ ମେଡ଼ିକାଲର ଡକ୍ଟର କହିଲେ ଏହି ବିମାରୀ ଭଲ ହୁଏନାହିଁ, ରକ୍ତ ଚେକ୍ କରୁଥିବଏବଂ ରକ୍ତ କମିଗଲେ ରକ୍ତ ଚଢ଼ାଉଥିବ, ଆଉ ଅନ୍ୟ କିଛି ରାସ୍ତା ନାହିଁ । ଏଥିରେ ମୁଁ



ବହୁତ ମର୍ମାହତ ହୋଇଯାଇଥିଲି । ତେଣୁ ମୁଁ ମାତାଙ୍କ ପିଣ୍ଡି ପାଖରେ ପହଞ୍ଚିବାକ୍ଷଣୀ ଭକ୍ତି ଓ ଆନନ୍ଦରେ ବିହ୍ୱଳିତ ହୋଇ ଗୁହାରୀ ଜଣାଇଲି - ମାଁ ଗୋ ଜଗତ୍ ମଙ୍ଗଳ କାରିଣୀ ଜଗତ୍ ଜନନୀ ତୋର ଦର୍ଶନ ପାଇଁ ଆସିଥିବା ଏହି ବୈଦ୍ୟନାଥକୁ ତୋର କୋଳରେ ଅର୍ପଣ କରୁଛି, ଏହାର ଶରୀର ସୁସ୍ଥ ସବଳ ନିରୋଗୀ କର ଗୋ ମାତା, ତୋର ଶ୍ରୀ ଚରଣରେ ଏହି ମୋର ପ୍ରାର୍ଥନା ।

ମାତାଙ୍କୁ ବିଶ୍ୱାସର ସହିତ ଏତିକି ଜଣାଇ ଫେରି ଆସିଲୁ । ଆଶ୍ଚର୍ଯ୍ୟର କଥା ମୁଁ ଆଉ ବୈଦ୍ୟନାଥକୁ କୌଣସି ଡକ୍ଟର ପାଖକୁ ନେଇନାହିଁ, କିନ୍ତୁ ମାଁଙ୍କର ଆଶିର୍ବାଦରୁ ସେ ବର୍ତ୍ତମାନ ସୁସ୍ଥ, ସବଳ ଓ ନିରୋଗୀ ଅଟେ ।]

ମନେ ମନେ ମାତାଙ୍କର ପିଣ୍ଡି ସମ୍ମୁଖରେ ଠିଆ ହୋଇ ତିନି ଶକ୍ତିଙ୍କୁ ସୁମରଣା କରି -

(୧) **ଓଁ ନମୋ ମାତଃ ବୈଷ୍ଣବ ଦେବୀ,** କହି ମାତା ମହାକାଳୀ ପିଣ୍ଡି (ବାମ ପଟର)ରେ ମନ୍ଦାର ଫୁଲ ଅର୍ପଣ କରନ୍ତୁ । ତାପରେ -

(୨) **ଓଁ ନମୋ ମାତଃ ବୈଷ୍ଣବ ଦେବୀ,** କହି ମାତା ମହାଲକ୍ଷ୍ମୀ ପିଣ୍ଡି (ମଝିରେ ଥିବା)ରେ ଲାଲ ବର୍ଣ୍ଣର ପଦ୍ମଫୁଲ ଅର୍ପଣ କରନ୍ତୁ । ତାପରେ -

(୩) **ଓଁ ନମୋ ମାତଃ ବୈଷ୍ଣବ ଦେବୀ,** କହି ମାତା ମହାସରସ୍ୱତୀ ପିଣ୍ଡି (ଡାହାଣ ପଟର)ରେ ଶୁକ୍ଳ ବର୍ଣ୍ଣର ପଦ୍ମଫୁଲ ଅର୍ପଣ କରନ୍ତୁ । ତାପରେ

(୪) ଭାବନ୍ତୁ ତିନିଶକ୍ତି ମିଳିତ ହୋଇ ବୈଷ୍ଣବ ଦେବୀ ରୂପ ଧାରଣ କରି ଅଭୟ ମୁଦ୍ରାରେ ସିଂହ ଉପରେ ବିଜେ ହୋଇଛନ୍ତି ।

**ଓଁ ନମୋ ମାତଃ ବୈଷ୍ଣବ ଦେବୀ,** କହି ମାତାଙ୍କ ଗଳାରେ ନାନାବିଧ ଫୁଲହାର ଅର୍ପଣ କରନ୍ତୁ ଏବଂ ବାହନ ସିଂହ ଗଳାରେ ମଧ୍ୟ ଫୁଲହାର ଅର୍ପଣ କରନ୍ତୁ । ତାପରେ -

(୫) ମନେ ମନେ ଭୈରବ ବାବା ଶ୍ରୀ ଶିବଲିଙ୍ଗ ସମ୍ମୁଖରେ ଠିଆହୋଇ, **ଓଁ ନମଃ ଭୈରବ ବାବାୟ,** କହି ଶ୍ରୀ ଶିବ ଲିଙ୍ଗରେ ବିଲ୍ୱପତ୍ର ଅର୍ପଣ କରନ୍ତୁ ।



## ଶ୍ରୀ ଅମରନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ

[**ସୂଚନା:** ବାବା ଅମରନାଥ ଜ୍ୟୋତିର୍ଲିଙ୍ଗ ପ୍ରକୃତି ଦ୍ୱାରା ତିଆରି ଏକ ଚମତ୍କାର ବରଫ ଜ୍ୟୋତିର୍ଲିଙ୍ଗ ମାତ୍ର ତିନିମାସ ପାଇଁ ଭକ୍ତଙ୍କୁ ଦର୍ଶନ ଦେଇଥାନ୍ତି ।

ବସ୍‌ଯୋଗେ ଜାମ୍ମୁରୁ ଶ୍ରୀନଗର ଦେଇ ପହିଲି ଗାଁରେ ପହଞ୍ଚିବାପରେ, ଏଠାରୁ ହିମାଳୟ ଭିତରେ ୪୨ କିଲୋମିଟର ପାହାଡ଼ିଆ ରାସ୍ତାରେ ଚାଲିଚାଲି ଗଲେ ଅମରାବତୀ ନଦୀ କୂଳରେ ଶ୍ରୀ ଅମରନାଥଙ୍କ ପବିତ୍ର ଗୁମ୍ଫା ଦେଖିବେ । ଏହି ବିଶାଳ ଗୁମ୍ଫା ଭିତରେ ବରଫର ଜ୍ୟୋତିର୍ଲିଙ୍ଗ ପ୍ରକୃତି ଦ୍ୱାରା ତିଆରି ହୋଇ ଆର୍ବିଭୂତ ହୋଇଥାନ୍ତି । ଜୁନ୍ ମାସରୁ ଅଗଷ୍ଟମାସ, ମାତ୍ର ତିନିମାସ ଏହି ଜ୍ୟୋତିର୍ଲିଙ୍ଗ ଦର୍ଶନ କରିବାକୁ ମିଳେ । ଲକ୍ଷ ଲକ୍ଷ ଶ୍ରଦ୍ଧାଳୁ ଭକ୍ତ ପ୍ରତି ବର୍ଷ ଏହି ଚମତ୍କାରୀ ଜ୍ୟୋତିର୍ଲିଙ୍ଗ ଦର୍ଶନ କରିବାପାଇଁ ଯାଆନ୍ତି । ପହିଲି ଗାଁ ଠାରୁ ପବିତ୍ର ଗୁମ୍ଫା ପର୍ଯ୍ୟନ୍ତ ଶିବ ସେବକମାନେ ସ୍ଥାନେ ସ୍ଥାନେ ମାଗଣାରେ ରହିବା, ଖାଇବା ଓ ଚିକିତ୍ସାର ସୁବିଧା କରିଥାନ୍ତି । ଏହି ବ୍ୟବସ୍ଥାରେ ମୁଁ ଖୁସି ହୋଇ ପାଞ୍ଚ ହଜାର ଟଙ୍କା ପଠାଇବି ବୋଲି ସଙ୍କଳ୍ପ କଲି । କିନ୍ତୁ ଘରେ ପହଞ୍ଚିବା ପରେ, ପାଞ୍ଚହଜାର ଟଙ୍କାରୁ ଦୁଇ ହଜାର ଟଙ୍କା ଜଣେ ଗରିବ ପିଲାକୁ ସ୍କୁଲ୍





ଫିକ୍ସ ବାନ୍ଧିବା ପାଇଁ ଦେଇଦେଲି ଏବଂ ବାକି ତିନି ହଜାର ଟଙ୍କା ଗୋଟିଏ ଶିବ ସେବକ ମଣ୍ଡଳି ପାଖକୁ ଷ୍ଟେଟ୍ ବ୍ୟାଙ୍କ ଦ୍ୱାରା ପଠାଇଦେଲି ।

ଶ୍ରୀ ଅମରନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ କରିବା ପାଇଁ ଯିବାକୁ ହେଲେ ଆଗ ନିଜର ସ୍ୱାସ୍ଥ୍ୟ ଡକ୍ଟର ପାଖରେ ପରିକ୍ଷାକରି, ଜାମ୍ମୁ-କାଶ୍ମିର ବ୍ୟାଙ୍କରୁ ୨୫ ଟଙ୍କା ମୂଲ୍ୟର ଟିକଟ କରିବାକୁ ପଡ଼ିଥାଏ । ଏହି ଟିକଟରେ ଯାତ୍ରୀଙ୍କୁ ଏକ ଲକ୍ଷ ଟଙ୍କାର ଜୀବନ ବୀମା ମିଳିଥାଏ ।

ପହିଲି ଗାଁ ଠାରୁ ଶ୍ରୀ ଅମରନାଥ ପବିତ୍ର ଗୁମ୍ଫାରେ ପହଞ୍ଚିବା ପର୍ଯ୍ୟନ୍ତ ଯାତ୍ରୀଙ୍କୁ ବହୁତ କଷ୍ଟ ସହିବାକୁ ପଡ଼ିଥାଏ । କିନ୍ତୁ ପବିତ୍ର ଗୁମ୍ଫାରେ ପହଞ୍ଚିବା ପରେ ଶ୍ରୀ ଅମରନାଥଙ୍କ ଚମତ୍କାରୀ ୧୬ ଫୁଟ ଉଚ୍ଚ ବରଫ ଜ୍ୟୋତିର୍ଲିଙ୍ଗଙ୍କୁ ଦର୍ଶନ କରି ଭକ୍ତ ଏପରି ଭାବ ବିହ୍ୱଳିତ ହୋଇଯାଏ ଯେ - ସମସ୍ତ ପଥକଷ୍ଟ କୁଆଡ଼େ ଉଭେଇଯାଏ । ମୁଁ ଯେମିତି ବାବା ଅମନାଥଙ୍କର ବିରାଟ ବରଫ ଜ୍ୟୋତିର୍ଲିଙ୍ଗ ଦର୍ଶନ କଲି, ମୋର ଆଖିରୁ ଏତେ ଆନନ୍ଦାଶ୍ରୁ ବୋହିବାରେ ଲାଗିଲା ଯେ - ମୁଁ ଚେଷ୍ଟାକରି ମଧ୍ୟ ଅଟକାଇପାରିଲି ନାହିଁ ଏବଂ ମୋର ସମସ୍ତ ପଥକଷ୍ଟ ଉଭେଇ ଯାଇଥିଲା ।]

**ଓଁ ନମଃ ଅମରନାଥାୟ ।** ଏହି ମନ୍ତ୍ର ଜପି ଜପି ମନେମନେ ବୃଷଭ ଦର୍ଶନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ । ତା'ପରେ ଶ୍ରୀ ଅମରନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ କରନ୍ତୁ ଏବଂ ପଞ୍ଚମୁଖି ବିଲ୍ୱପତ୍ର ଅର୍ପଣ କରନ୍ତୁ ।

## ପବିତ୍ର କୈଳାସ ଓ ମାନସରୋବର ଦର୍ଶନ

[ **ସୂଚନା:** ପ୍ରଭୂ ପରମପିତା ପରମଆତ୍ମା ଜ୍ୟୋତିର୍ମୟ ଶିବ, ଜଗତ୍‌ମାତା ପାର୍ବତୀଙ୍କ ସହିତ କୈଳାସ ପର୍ବତରେ ନୀବାସ କରନ୍ତି । ତେତ୍ରୀଶ କୋଟି ଦେବତାଙ୍କର -

**ପୁନରପୀ ଜନମଂ ପୁନରପୀ ମରଣଂ**
**ପୁନରପୀ ଜନନୀ ଜଠରେ ଶୟନଂ**

ଘଟିଥାଏ । କିନ୍ତୁ ପରମ୍ ବ୍ରହ୍ମ ଶିବଙ୍କର ନା ମୃତ୍ୟୁ ଅଛି ନା ପୁନର୍ଜନ୍ମ ଅଛି । ସେ ଜନ୍ମ-ମୃତ୍ୟୁର ଉର୍ଦ୍ଧରେ । ସେ ଅଜର ଅମର । ସେ ସଦାସର୍ବଦା ହିଁ କୈଳାସରେ ପାର୍ବତୀଙ୍କ ସହିତ ବିହାର କରନ୍ତି । ତେଣୁ କୈଳାସ





ଅତି ପବିତ୍ର ଅଟେ ଏବଂ ଏହାର ଦୃଶ୍ୟ ଅତି ଚମତ୍କାରୀ ଅଟେ । ପବିତ୍ର କୈଳାସ ପର୍ବତ ଉପରେ ପ୍ରତି ଘଣ୍ଟାକୁ ଥରେ ବରଫସହିତ ବର୍ଷା ହୁଏ । ଏହି ଦୃଶ୍ୟ ଦେଖିଲେ ଆପଣ ଜୀବନରେ କେବେ ମଧ୍ୟ ଭୂଲିପାରିବେ ନାହିଁ ଏବଂ ଭକ୍ତିରେ ଆତ୍ମ ବିଭୋର ହୋଇ ଉଠିବେ । ଏହି ଦୃଶ୍ୟ ଏପରି ପ୍ରତିୟମାନ ହୁଏ ଯେପରି ସ୍ୱର୍ଗରୁ କେହି ଅଦୃଶ୍ୟ ଶକ୍ତି କୈଳାସରେ କ୍ଷୀର ଢ଼ାଳୁଛି । ହିନ୍ଦୁ ଧର୍ମ, ଜୈନ ଧର୍ମ ଓ ବୌଦ୍ଧ ଧର୍ମରେ ଏହି ଦୃଶ୍ୟକୁ ଏପରି ବିଶ୍ୱାସ କରିଛନ୍ତି ଯେ - ଇନ୍ଦ୍ରଦେବ ଦେବଗଣଙ୍କୁ ସାଥିରେ ଧରି ଶିବଙ୍କର ଜଳାଭିଷେକ କରୁଛନ୍ତି । ଏହି ଦୃଶ୍ୟ ଦେଖି ସ୍ୱାମୀ ପ୍ରଣବାନନ୍ଦ ୨୫ ଥର କୈଳାସ ପରିକ୍ରମା କରିଥିଲେ । ଏଠାରେ ଭଗବାନ୍ ଶ୍ରୀହମ୍‌ସାଙ୍କୁ ଗୁରୁ ଦତ୍ତାତ୍ରେୟଙ୍କର ଦର୍ଶନ ମିଳିଥିଲା । ତ୍ରୟୋଦଶ ଖ୍ରୀଷ୍ଟାବ୍ଦରେ ବୌଦ୍ଧ ସନ୍ୟାସୀ ଗୋସାଙ୍ଗ୍ ଏଠାରେ ଚାରି ବର୍ଷ ତପସ୍ୟ କରିଥିଲେ । ଏଠାରେ ଚିନ୍ ପରିବ୍ରାଜକ ହୁଏନ୍‌ସାଂ ତପସ୍ୟା କରିଥିଲେ । ଏଠାରେ ଋଷଭନାଥଙ୍କର ନିର୍ବାଣ ପ୍ରାପ୍ତି ହୋଇଥିଲା । ଭଗବାନ୍ ଗଣେଶ ସାତଥର କୈଳାସ ପରିକ୍ରମାକରି ମାତା-ପିତାଙ୍କର ଅତି ପ୍ରୀୟ ହୋଇଯାଇଥିଲେ ଏବଂ ଗଣପତି ଉପାଧି ପ୍ରାପ୍ତ ହୋଇଥିଲେ ।



ବୌଦ୍ଧମାନଙ୍କ ମତରେ କୈଳାସ ନବତଳ ସ୍ୱସ୍ତିକ ପର୍ବତ ଅଟେ । ଜୈନମାନଙ୍କ ମତରେ କୈଳାସ ହେଉଛି ଅଷ୍ଟପାଦ ପର୍ବତ । କୈଳାସ ପର୍ବତର ପାଦ ଦେଶରେ ଗୋଟିଏ ପଟେ ରାବଣ କୃତ ରାକ୍ଷସ ହ୍ରଦ ଓ ଅନ୍ୟ ପଟେ ବ୍ରହ୍ମାଙ୍କ ମାନସରୁ ସୃଷ୍ଟି ମାନସରୋବର ଅଛି । ଦେବତାମାନେ ସ୍ୱର୍ଗରୁ ଆସି ଏହି ମାନସରୋବରରେ ସ୍ନାନ କରି ଶିବଙ୍କୁ (କୈଳାସ) ଜଳାଭିଷେକ କରନ୍ତି । ଏହି ମାନସରୋବରକୁ କ୍ଷୀର ସାଗର ମଧ୍ୟ କୁହାଯାଏ । ଭଗବାନ୍ ବିଷ୍ଣୁ, ମାତା ମହାଲକ୍ଷ୍ମୀଙ୍କୁ ସାଙ୍ଗରେ ଘେନି ଏହି ମାନସରୋବରରେ ଅନନ୍ତ ନାଗ ଶଯ୍ୟାରେ ଶୟନ କରିଥାନ୍ତି । ତେଣୁ ଏହି ମାନସରୋବର ଜଳରେ ସ୍ନାନକରି ସପ୍ତପୁରୁଷ ପିତୃଲୋକଙ୍କ ନା'ରେ ଜଳ ଟେକିଲେ ପିତୃଲୋକଙ୍କୁ ସ୍ୱର୍ଗସୁଖ ପ୍ରାପ୍ତ ହୁଏ ଏବଂ ପିତୃଲୋକ ସନ୍ତୁଷ୍ଟ ହୋଇ ଆଶିର୍ବାଦ କରନ୍ତି । ମାନସରୋବରରୁ ଚାରୋଟି ପୁଣ୍ୟତୋୟା ନଦୀ ଯଥା- ବ୍ରହ୍ମପୁତ୍ର, ବର୍ଣ୍ଣାଳୀ, ସିନ୍ଧୁ ଓ ଝେଲମ୍ ନଦୀ ଉତ୍ପତ୍ତି ହୋଇଛି ।

କୈଳାସ ମାନସରୋବର ଦର୍ଶନ ପାଇଁ ଯିବାକୁ ଦୁଇଟି ରାସ୍ତା ଅଛି । ଗୋଟିଏ ରାସ୍ତା ନେପାଳ ଦେଇ ବେସରକାରୀଭାବେ ଚାରିଚକିଆ ଛୋଟ ଗାଡ଼ିରେ ଯିବାକୁ ପଡ଼େ । ଗୋଟିଏ ଗାଡ଼ିରେ ମାତ୍ର ଚାରିଜଣ

ସବାରୀ ହୁଅନ୍ତି । କିନ୍ତୁ ଅନ୍ୟ ରାସ୍ତାଟି ଦିଲ୍ଲୀରୁ ଉତ୍ତରପ୍ରଦେଶ, ଉତ୍ତରଖଣ୍ଡ ଦେଇ ଭାରତର ଶେଷ ସୀମା ଓଁ ପର୍ବତ ପାଖଦେଇ ଯିବାକୁ ପଡ଼େ । ଏହି ରାସ୍ତାରେ ଯିବାପାଇଁ ଭାରତ ଓ ଚିନ୍ ସରକାରଙ୍କର ମିଳିତ ଉଦ୍ୟମରେ କୁମାୟୁନ୍ ଉମାମଣ୍ଡଳ ସଂସ୍ଥା ଦ୍ୱାରା ବସ୍‌ଯାତ୍ରାର ସୁବିଧା କରାଯାଇଛି । ପ୍ରତିବର୍ଷ ଜାନୁୟାରୀମାସର କୌଣସି ଦିନ Times of India ନିଉଜ୍ ପେପର୍‌ରେ କୈଳାସ ମାନସରୋବର ଯାତ୍ରା ପାଇଁ ଦରଖାସ୍ତ ଆବେଦନ କରିବା ପାଇଁ ପ୍ରକାଶିତ ହୁଏ ।

କୈଳାସ ମାନସରୋବର ସମୁଦ୍ରପତନ ଠାରୁ ୧୮୦୦୦ ଫୁଟ୍ ଉଚ୍ଚରେ ଅବସ୍ଥିତ । ଏଠାରେ ବର୍ଷସାରା ବରଫ ଆଚ୍ଛାଦିତ ଥାଏ । ଏଠାରେ ଜଳବାୟୁ '-୫°C' ଥଣ୍ଡା ସାଙ୍ଗକୁ ପ୍ରବଳ ପବନ ବହୁଥାଏ । ତେଣୁ କୈଳାସ ମାନସରୋବର ଯାତ୍ରା ଓ ଦର୍ଶନ କରିବା ମନୁଷ୍ୟ ଜୀବନରେ ଏକ କଠୋର ତପସ୍ୟା ଅଟେ ।





ଶିର୍ଖା (ନାରାୟଣ ସ୍ୱାମୀ ଆଶ୍ରମ)
↓ Walk (14 km/10000 fts. hight)
ଗାଲା
↓ ପାହାଚ (11 km/4400 ପାହାଚ)
ମାଲପା
↓ Walk (9 km)
ବୁଧି
↓ 18 km
ଗୁଞ୍ଜି (Medical Treatment for fitness)
↓ Walk (14 km / 14000 fts. hight)
ଗର୍ବ୍ୟାଙ୍ଗ (କାଲାପାନି/ନାଭିଡ୍ୟାଙ୍ଗ କ୍ୟାମ୍ପ/ଶିବ ଓ କାଳୀ ମନ୍ଦିର/ଓଁ ପର୍ବତ)
Walk ↓ 16700 fts. hight/– $5^0$C Temp.
ଲିପୁଲେଖ (ଭାରତ-ଚୀନ ସୀମାନ୍ତ)



↓ Bus
ଟକଲା କୋଟ (ବର୍ଣ୍ଣାଳୀ ନଦୀ/ଏଠାରୁ ଦୁଇଦଳ ହୁଅନ୍ତି)

ଟାର୍ଚେନ୍ (କୈଳାସ ପରିକ୍ରମା)
↓ Walk (6 km)
କାଙ୍ଗିନି ପଥର (ନିର୍ବିଘ୍ନ ଯାତ୍ରା ପାଇଁ ପ୍ରାର୍ଥନା/ରାବଣ ତାଲ/ଉମାଚୁ ନଦୀ/ ବୌଦ୍ଧ ତୀର୍ଥ ଟର୍ପୋଚେ)
↓ 15 km/18000 ft. hight
ଜୋରେବୁ ଗୁମ୍ଫା (ମଠ)
↓ 19700 fts. hight

ହୋରେ (ମାସରୋବର ପରିକ୍ରମା)

ଡୋଲ୍‌ମା ପାସ୍ (ବଡ଼ ପଥରକୁ ମାତା ପାର୍ବତୀ ରୂପେ ପୂଜା କରାଯାଏ)
↓ Walk
ଗୌରୀ କୁଣ୍ଡ (ମାତା ପାର୍ବତୀଙ୍କ ସ୍ନାନ ସ୍ଥଳି)
↓ Walk
ଜଙ୍ଗ ଜୋରେବୁ
Walk (9 km)
ଟାର୍ଚେନ୍ (କୈଳାସ ପରିକ୍ରମା ସମାପ୍ତ)
↓ 45 km. by Truck.
ହୋରେ (ମାନସରୋବର ପରିକ୍ରମା ଆରମ୍ଭ/ଯାଇବି ଠାରେ ମାନସରୋବରରେ ସ୍ନାନ କରିବା)
↓
ଟକଲାକୋଟ (ମାନସରୋବର ପରିକ୍ରମା ସମାପ୍ତି)
↓ Returned back
ଦିଲ୍ଲୀ



[ କୈଳାସ ମାନସରୋବର ଦର୍ଶନ ଯାତ୍ରା ଚାଳିଶି ଦିନରେ ସମାପ୍ତି ହୋଇଥାଏ । ]

ହିମାଳୟର ଓଁ ପର୍ବତକୁ ମନେମନେ ଦର୍ଶନ କରି **''ଓଁ ନମଃ ଓଁକାରେଶ୍ୱରାୟ''** ମନ୍ତ୍ର ଜପି ଜପି ଶ୍ରୀ ଶିବ ଭଗବାନ୍‌ଙ୍କୁ ଧ୍ୟାନ କରନ୍ତୁ ।

(ସର୍ବପ୍ରଥମେ ଶ୍ରୀ ଶିବ ଭଗବାନ୍ ଏହି ପର୍ବତ ଉପରେ **ଓଁ** ମନ୍ତ୍ର ଉଚ୍ଚାରଣ କରିଥିଲେ । ତା'ପରେ ଜଗତରେ ଓଁ ମନ୍ତ୍ରର ପ୍ରଚାର ହୋଇଥିଲା ।)

**ଓଁକାରଂ ଏକାକ୍ଷରଂ ଆଦ୍ୟାକ୍ଷରଂ ଆବିର୍ଭୂତକଂ ।**
**ପରମ୍‌ବ୍ରହ୍ମଂ ନିର୍ବିକଳ୍ପଂ ପୂର୍ଣ୍ଣାନନ୍ଦଂ ମୟଂଦରୀଃ ।**
**ସର୍ବଭୂତେ ଯଃ ବିଦିତଂ ତସ୍ୟପଦେ ନମସ୍ୟହଂ ।**

ତା'ପରେ ମନେମନେ ଭାବନ୍ତୁ ଯେ - ହିମାଳୟ ଯାଇବିଠାରେ ମାନସରୋବର କୂଳରେ ଠିଆ ହୋଇଛନ୍ତି ।

**''ଓଁ ନମଃ କୈଳାସ ମାନସରୋବର କ୍ଷୀରାବ୍ଧିଶାୟୀ ଲକ୍ଷ୍ମୀ-ନାରାୟଣାୟ ନମୋନମଃ'' ।** ଏହି ମନ୍ତ୍ର ଜପିଜପି ମନେମନେ ଶ୍ରୀ ହନୁମାନ ଓ ଶ୍ରୀ ଗରୁଡ଼ଙ୍କୁ ନମସ୍କାର କରନ୍ତୁ ଏବଂ ପଦ୍ମଫୁଲ ହାର ଅର୍ପଣ କରନ୍ତୁ ।

ତା'ପରେ ମନେମନେ ମାନସରୋବରରେ ସ୍ନାନକରି ସୂର୍ଯ୍ୟ ଓ ପିତୃଲୋକଙ୍କୁ ଜଳ ଅଞ୍ଜୁଳି ଟେକନ୍ତୁ ।

ତା'ପରେ ଭାବନ୍ତୁ ମାନସରୋବର ମଝିରେ ଅନନ୍ତ ନାଗ ଶଯ୍ୟାରେ ଭଗବାନ୍ ନାରାୟଣ ଶୟନ କରିଛନ୍ତି ଓ ମାତା ମହାଲକ୍ଷ୍ମୀ ପ୍ରଭୂ ନାରାୟଣଙ୍କର ପାଦସେବା କରୁଛନ୍ତି ।

**''ଓଁ ନମଃ କୈଳାସ ମାନସରୋବର କ୍ଷୀରାବ୍ଧିଶାୟୀ ଲକ୍ଷ୍ମୀ-ନାରାୟଣାୟ ନମୋନମଃ''** ଏହି ମନ୍ତ୍ର ଜପିଜପି ଅନନ୍ତ ନାଗ ଶଯ୍ୟାର ଚାରିପଟେ ପ୍ରଦକ୍ଷୀଣ କରନ୍ତୁ ।

ତା'ପରେ **''ଓଁ ନମଃ ଲକ୍ଷ୍ମୀ-ନାରାୟଣାୟ''** ଏହି ମନ୍ତ୍ର ଜପିଜପି ଶ୍ରୀଲକ୍ଷ୍ମୀ-ନାରାୟଣଙ୍କୁ ପଦ୍ମଫୁଲ ହାର ଅର୍ପଣ କରନ୍ତୁ ଏବଂ ଧ୍ୟାନ କରନ୍ତୁ -



**ଶାନ୍ତାକାରଂ ଭୂଜଗ ଶୟନଂ**
**ପଦ୍ମନାଭଂ ସୂରେଶଂ ।**
**ବିଶ୍ୱାଧାରଂ ଗଗନ ସଦୃଶଂ**
**ମେଘବର୍ଣ୍ଣମ୍ ଶୁଭାଙ୍ଗମ୍ ।**
**ଲକ୍ଷ୍ମୀକାନ୍ତଂ କମଳ ନୟନଂ**
**ଯୋଗୀଭିଃ ଧ୍ୟାନଗମ୍ୟଂ ।**
**ବନ୍ଦେ ବିଷ୍ଣୁମ୍ ଭବଭୟ ହରଂ**
**ସର୍ବ ଲୋକୈକ ନାଥଂ ।**

ତା'ପରେ ''ଓଁ ବ୍ରହ୍ମଣେ ନମଃ'' ଏହି ମନ୍ତ୍ର ଜପିଜପି ଭାବନ୍ତୁ - ଶ୍ରୀ ବିଷ୍ଣୁଙ୍କ ନାଭିରୁ କମଳ ଉତ୍ପତ୍ତି ହୋଇଛି ଓ କମଳ ଉପରେ ପରମ ପିତା ପରମ ଆତ୍ମା ବ୍ରହ୍ମା ଧ୍ୟାନମଗ୍ନ ହୋଇ ଅଭୟ ମୁଦ୍ରାରେ ବସିଛନ୍ତି ।

ତା'ପରେ ''ଓଁ ନମଃ ଶିବାୟ- ଓଁ ନମୋ ମାତଃ ପାର୍ବତୀ ଏହି ମନ୍ତ୍ର ଜପି ଜପି ଭାବନ୍ତୁ ପରମପିତା ପରମ ଆତ୍ମା ଶିବ-ମାତା ପାର୍ବତୀଙ୍କ ସହିତ ଅଭୟ ମୁଦ୍ରାରେ ଶୂନ୍ୟ ଆକାଶରେ ଥାଇ ଏହି ଦୃଶ୍ୟ ଦେଖୁଛନ୍ତି ।

ବର୍ତ୍ତମାନ ଭାବନ୍ତୁ ଯେ - କୈଳାସ ପର୍ବତ ନିକଟରେ କାଙ୍ଗିନି ପଥର ଠାରେ ଠିଆ ହୋଇଛନ୍ତି ଏବଂ ଧ୍ୟାନ କରୁଛନ୍ତି :-

(୧) ଶ୍ରୀ ଗଣେଶଙ୍କୁ ଧ୍ୟାନକରି ବିଲ୍ୱପତ୍ର ଅର୍ପଣ କରନ୍ତୁ :-

**ଓଁ ଗଂ ଗଣପତୟେ ନମଃ । ଅବିଘ୍ନମସ୍ତୁଃ ।**

**ସର୍ବକାର୍ଯ୍ୟେ ସୁସର୍ବଦା । ଓଁ ନମଃ ସିଦ୍ଧିବିନାୟକାୟ ।**

**ମୁକ୍ତାଗୌରଂ ମତ୍ତଗଜ ମୁଖଂ, ଚନ୍ଦ୍ରଚୁଣ୍ଡଂ ତ୍ରୀନେତ୍ରମ୍**

**ହସ୍ତୈସ୍ୱୈଦଧତ୍ ମରବିନ୍ଦାକୁଶୌ, ରତ୍ନକୁମ୍ଭମ୍ ଅଙ୍କସ୍ତୟାଃ**



**ସରସିଜ ରୂପେସ୍ତଦ୍, ଧୃଜାଲୟୀ ପାଣେର୍ଦ୍ଦେବ୍ୟାଃ**

**ୟୋନୌ ବିନିହିତଂ କରଂ, ରତ୍ନମୌଳୀଂ ଭଜାମହଃ ।**

ଭଗବାନ୍ ଗଣପତି ମେରେ ଜୀବନ୍ କେ ବିଘ୍ନ ଔର ଦାରିଦ୍ର୍ୟକା ନାଶ କର୍ ତେ ହୁଏ ମେରେ ଘରମେ ସ୍ଥାପିତ ହୋ ଔର ମେରା ଜୀବନ୍ କୋ ଖୁସିଓ ସେ ସୁଖ ସମୃଦ୍ଧି ସେ ପୂର୍ଣ୍ଣ କରତେ ହୁଏ ମୁଝେ ପୂର୍ଣ୍ଣ ଐଶ୍ୱର୍ଯ୍ୟଯୁକ୍ତ ବନାଏ । ଜିସ୍ ସେ କି ମୈ ଆପ୍ନା ଜୀବନ୍ ମେ ପୂର୍ଣ୍ଣତା ଔର ସଫଳତା ପ୍ରାପ୍ତ କରସକୁଁ ।

(୨) ଶ୍ରୀ କାର୍ତ୍ତିକେୟଙ୍କୁ ଧ୍ୟାନ କରି ବିଲ୍ୱପତ୍ର ଅର୍ପଣ କରନ୍ତୁ -

**ଓଁ ନମଃ କାର୍ତ୍ତିକେୟାୟ ।**

**ଓଁ କାର୍ତ୍ତିକେୟ ନମସ୍ତେତୁ**

**ରୁଦ୍ରତେଜ ସମୁଦ୍‌ଭବ ।**

**ଜିତେନ୍ଦ୍ରିୟ ନମସ୍ତେତୁ**
**ସ୍ବର୍ଣାତୁର ନମୋନମଃ ।**

(୩) ମାତା ପାର୍ବତୀଙ୍କୁ ଧ୍ୟାନ କରି ମନ୍ଦାରଫୁଲ ଅର୍ପଣ କରନ୍ତୁ :-

**ଓଁ ନମୋ ମାତଃ ପାର୍ବତୀ ।**
**ଅନ୍ନପୂର୍ଣ୍ଣେ ସଦାପୂର୍ଣ୍ଣେ ଶଙ୍କର ପ୍ରାଣ ବଲ୍ଲଭେ । ଜ୍ଞାନଂ ବିଭବ ସିଦ୍ଧାର୍ଥମ୍ ଭିକ୍ଷାଂ ଦେହି ଚ ପାର୍ବତୀ ॥**

(୪) ଶ୍ରୀ କୈଳାସ ନାଥଙ୍କୁ ଧ୍ୟାନ କରି ବିଲ୍ୱପତ୍ର ଅର୍ପଣ କରନ୍ତୁ :-

**ଓଁ ନମଃ କୈଳାସାଧିପତୀ କୈଳାସ ନାଥାୟ ।**
**ଓଁ କର୍ପୂର ଗୌରଂ କରୁଣାବତାରଂ**
**ସଂସାର ସାରଂ ଭୂଜଗେନ୍ଦ୍ର ହାରଂ ।**
**ସଦା ବସନ୍ତଂ ହୃଦୟାର ବିନ୍ଦେ**
**ଭବଂ ଭବାନୀ ସହିତଂ ନମାମୀ ।**



(୫) ଶ୍ରୀ ବଟୁକ ଭୈରବଙ୍କୁ ଧ୍ୟାନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ :-

**ଓଁ ନମଃ ବଟୁକ ଭୈରବାୟ ।**

(୬) ଶ୍ରୀ ବୀରଭଦ୍ରଙ୍କୁ ଧ୍ୟାନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ :-

**ଓଁ ନମଃ ବୀରଭଦ୍ରାୟ ।**

(୭) ଶ୍ରୀ ଶିବଭକ୍ତ ଶିବଗଣଙ୍କୁ ଧ୍ୟାନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ :-

**ଓଁ ନମଃ ଶିବଭକ୍ତ ଶିବଗଣାନାଂ ନମୋନମଃ ।**

(୮) ଶ୍ରୀ ନନ୍ଦୀ-ଭୃକୁଟିଙ୍କୁ ଧ୍ୟାନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ :-

**ଓଁ ନମଃ ନନ୍ଦୀ-ଭୃକୁଟି ମହାରାଜାୟ ନନୋନମଃ ।**

(୯) ଶ୍ରୀ ନାଗରାଜଙ୍କୁ ଧ୍ୟାନ ଓ ଚମ୍ପାଫୁଲ ଅର୍ପଣ କରନ୍ତୁ :-

**ଓଁ ନମଃ ନାଗରାଜାୟ ।**

(୧୦)ଶ୍ରୀ ସୋମରାଜ୍‌ଙ୍କୁ ଧ୍ୟାନ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ :-

**ଓଁ ନମଃ ସୋମରାଜାୟ ।**

(୧୧)ନବଗ୍ରହଙ୍କୁ ଧ୍ୟାନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ :-

**ଓଁ ନମଃ ନବଗ୍ରହାଣାଂ ନମୋନମଃ ।**

ତା'ପରେ କୈଳାସ ପର୍ବତର ଚାରିପଟେ ପ୍ରଦକ୍ଷିଣ କରନ୍ତୁ ଏବଂ ପ୍ରତି ପାର୍ଶ୍ୱରେ ଥିବା ପାର୍ଶ୍ୱଦେବାଦେବୀଙ୍କୁ ନମସ୍କାର କରନ୍ତୁ । ଯଥା-

ଦକ୍ଷିଣରେ - **ଓଁ ଗଂ ଗଣପତୟେ ନମଃ**

ପଶ୍ଚିମରେ - **ଓଁ ନମଃ କାର୍ତ୍ତିକେୟାୟ ।**

ଉତ୍ତରରେ - **ଓଁ ନମୋ ମାତଃ ପାର୍ବତୀ ।**

ପୂର୍ବରେ - **ଓଁ ନମଃ ନନ୍ଦି-ଭୃକୁଟି ମହାରାଜାୟ ।**

ବର୍ତ୍ତମାନ ଭାବନ୍ତୁ ବୃଷଭ ପଛରେ ଠିଆହୋଇ ବୃଷଭଙ୍କୁ ଏବଂ ଶ୍ରୀ ଶିବ-ପାର୍ବତୀଙ୍କୁ ଦର୍ଶନ କରୁଛନ୍ତି -



**ଓଁ ନମଃ ଧର୍ମରୂପି ବୃଷଭାୟ ।**

(ବିଲ୍ୱପତ୍ର ଅର୍ପଣ କରି)

**ତ୍ରୀପାଦଂ ସପ୍ତହସ୍ତଞ୍ଚ ଚତ୍ୱାର ଶୃଙ୍ଗ ମେବଚ ।**
**ଦ୍ୱେ ଶିର୍ସଚ ତ୍ରୀଧାବଧ୍ୱ ମହାଦେବ ବୃଷଭ, ମର୍ତ୍ତ୍ୟା ଆବିର୍ବେଶ ॥**

(ବର୍ତ୍ତମାନ ବୃଷଭଙ୍କ ବୃଷଣକୁ ଛୁଇଁ ଶ୍ରୀ ଶିବଙ୍କୁ ଦର୍ଶନ କରନ୍ତୁ ।)

**ବୃଷଂ ଚଣ୍ଡଂ ବୃଷଂ ଦୃଷ୍ଟ୍ୱା ସୋମସୂତ୍ରଂ ପୂନଃବୃଷଂ**
**ବୃଷସ୍ୟ ବୃଷଣଂ ସୃସ୍ୱା ଶଙ୍କରସ୍ୟାବଲୋକନଂ**
**କୋଟି ଜନ୍ମାର୍ଜିତଂ ପାପଂ ତତକ୍ଷଣାତ୍ ଦେବ ନାଶତି ।**
**ଓଁ ପାପୋହଂ ପାପ କର୍ମହଂ ପାପାତ୍ମା ପାପସମ୍ଭବଃ**
**ତ୍ରାହିମାଂ ତ୍ୱଂ ବିରୁପାକ୍ଷଂ ସର୍ବ ପାପଂ ହରୋ ହରଃ ।**

ଶ୍ରୀ ବିଶ୍ୱନାଥ କରୁଣାକର ଶୂଳପାଣେ
ଶମ୍ଭୁ ଗିରିଶ ଶିବ ଶଙ୍କର ଚନ୍ଦ୍ର ମୌଳେ
ଶ୍ରୀ ନୀଳକଣ୍ଠ ମଦନାନ୍ତକ ବିଶ୍ୱ ମୂର୍ତ୍ତେ
ଗୌରୀପତେ ମହିନିଧେହି କୃପାକଟାକ୍ଷଂ ।

ବ୍ରହ୍ମ ଉବାଚ । ନମୋ ବାମଦେବାୟ ।
ହେ ଶମ୍ଭୁ, ହେ ଇଶ, ହେ ପଶୁପତୀ, ହେ ଶିବ,
ହେ ଶୂଳୀ, ହେ ମହେଶ୍ୱର, ହେ ଇଶ୍ୱର, ହେ ସର୍ବଇଶାନ୍,
ହେ ଶଙ୍କର, ହେ ଚନ୍ଦ୍ରଶେଖର, ହେ ଭୂତେଷ୍ଟ ,
ହେ ଖଣ୍ଡପରଶୁ, ହେ ଗିରୀଶ, ହେ ଗିରୀଶମୃଢ଼,
ହେ ମୃତ୍ୟୁଞ୍ଜୟ, ହେ କ୍ଟୃତ୍ତିବାସ, ହେ ପିନାକୀନି,
ହେ ପ୍ରଥମାଧିପ, ହେ ଉଗ୍ରକପର୍ଧି, ହେ ଶ୍ରୀକଣ୍ଠ,



ହେ ଶୀତିକଣ୍ଠ, ହେ କପାଳଭୂତଲ, ହେ ବାମଦେବ,
ହେ ମହାଦେବ, ହେ ବିରୂପାକ୍ଷ, ହେ ତ୍ରୀଲୋଚନ,
ହେ କୃଷାନୁରେତ, ହେ ସର୍ବଜ୍ଞ, ହେ ଧୂର୍ଜଟି,
ହେ ନୀଳଲୋହିତ, ହେ ହର, ହେ ସ୍ମର,
ହେ ହରବର୍ଗୟ, ହେ ତ୍ରୀୟମ୍ବକ,
ହେ ତ୍ରୀପୁର ଅନ୍ତକ, ହେ ଗଙ୍ଗାଧର,
ହେ ଅନ୍ଧକରୀପୁ, ହେ କ୍ରତ୍ଧ୍ୱଂଶିନ୍,
ହେ ବୃଷଧ୍ୱଜ, ହେ ବ୍ୟୋମକେଶ, ହେ ଭବୋଭିମ,
ହେ ସ୍ଥାନରୂଦ୍ର, ହେ ଉମାପତୀ, ଭୋ ପରମପିତା, ପରମଆତ୍ମା ଶିବ,
ଅହଂ ଜ୍ଞାନ ହିନଂ, କ୍ରିୟା ହିନଂ, ଭକ୍ତି ହିନଂ,
ଶରଣ ରକ୍ଷ ପ୍ରଭୂ ।

ବର୍ତ୍ତମାନ ଭାବନ୍ତୁ ବୃଷଭ ପଖାଦେଇ ଯାଇ ଶ୍ରୀ ଶିବ ପାର୍ବତୀଙ୍କ ଶ୍ରୀଚରଣ ପାଖରେ ଠିଆହୋଇ ଭଗବାନ୍ ଶିବଙ୍କୁ ବିଲ୍ୱପତ୍ର ଅର୍ପଣ କରିବାପରେ ମାତା ପାର୍ବତୀଙ୍କୁ ମନ୍ଦାରଫୁଲ ଅର୍ପଣ କରି ଧ୍ୟାନ କରୁଛନ୍ତି ।

**ବଂ ବଂ ଭୋଳେ ହର ହର ମହାଦେବ,**

ହେ ମୋର ପରମ ପିତା ପରମାତ୍ମା ଜ୍ୟୋତିର୍ମୟ ଶିବ ତମେ କରୁଣାର ସାଗର ହେ ପ୍ରଭୂ ,

**ତମେ ଦୟାର ସାଗର ହେ ପ୍ରଭୂ**

**ତମର ମହିମା ଅପାର ହେ ପ୍ରଭୂ**

**ତମେ ଭକ୍ତ ବତ୍ସଳ ହେ ପ୍ରଭୂ**

**ତମେ ମଙ୍ଗଳମୟ ହେ ପ୍ରଭୂ**

**ତମେ ଆଶ୍ୱତୋଷ ହେ ପ୍ରଭୂ**

**ତମେ ବୈଦ୍ୟନାଥ ହେ ପ୍ରଭୂ**



**ତମେ ବିଶ୍ୱନାଥ ହେ ପ୍ରଭୂ**

**ତମେ ଅନନ୍ତ ହେ ପ୍ରଭୂ**

**ତମେ ଅପାର ହେ ପ୍ରଭୂ**

**ତମେ ସଦାନନ୍ଦ ହେ ପ୍ରଭୂ**

**ତମେ ସଦାଶିବ ହେ ପ୍ରଭୂ**

**ତମେ ଦେବାଧିଦେବ ମହାଦେବ ହେ ପ୍ରଭୂ**

**ତମେ ସତ୍ୟଂ-ଶିବଂ-ସୁନ୍ଦରଂ ହେ ପ୍ରଭୂ ।**

(ଫେରେ ଧ୍ୟାନ କରନ୍ତୁ)

**ଓଁ ନମଃ ଶିବାୟ । ଓଁ ନମୋ ମାତଃ ପାର୍ବତୀ ।**

**ଓଁ କାରଂ ବିନ୍ଦୁସ ଯୁକ୍ତଂ ନିତ୍ୟଂ ଧ୍ୟାୟନ୍ତି ଯୋଗିନଃ**

**କାମଦଂ ମୋକ୍ଷଦଂ ଚୈବ ଓଁକାରାୟ ନମୋନମଃ ।**

ନମନ୍ତି ରିଷିୟୋଦେବା ନମନ୍ତି ଅପ୍‌ସରାଗଣାଃ
ନରା ନମନ୍ତି ଦେବେଶଂ ନକାରାୟ ନମୋନମଃ ।
ମହାଦେବଂ ମହାତ୍ମାନଂ ମହାଯୋଗୀ ମହେଶ୍ୱରଂ
ସର୍ବପାପଂ ହରେଦେବ ମକାରାୟ ନମୋନମଃ ।
ଶିବଂ ଶାନ୍ତଂ ମହାଦେବଂ ଲୋକାନୁଗ୍ରହକାରଙ୍କ
ଶିବଂ ମେକଂ ପରଂବ୍ରହ୍ମଂ ଶିକାରାୟ ନମୋନମଃ ।
ବାହନଂ ବୃଷଭ ଯସ୍ୟ ବାସୁକି କଣ୍ଠଭୂଷଣଂ
ବାମେ ଶକ୍ତି ଧରଂଦେବଂ ବାକାରାୟ ନମୋନମଃ ।
ୟତ୍ରତତ୍ର ସ୍ଥିତ ଦେବ ଜଗତ୍‌ବ୍ୟାପି ମହେଶ୍ୱରଃ
ୟୋଗୁରୁ ସର୍ବ ଦେବାନାଂ ୟକାରାୟ ନମୋନମଃ ।



ପଞ୍ଚାକ୍ଷର ମିଦଂ ସ୍ତୋତ୍ରଂ ଯଃ ପଠେତ୍ ଶିବ ସନୀଧୌ ବାଞ୍ଛତାର୍ଥଂ ସଃ ପ୍ରାପ୍ତିର୍ଭବତୀ ଅନ୍ତିମେ ଶିବ ଲୋକଂ ସଃ ଗଚ୍ଛତି । ଇତି ଶ୍ରୀ ସ୍କନ୍ଧ ପୁରାଣେ ଶ୍ରୀ ଶିବ ପଞ୍ଚନାମାନୀ ସ୍ତୋତ୍ରଂ ସମ୍ପୁର୍ଣ୍ଣମ୍ ।

(ଫେରେ ଧ୍ୟାନ କରନ୍ତୁ)
ଓଁ ନମଃ ଶିବାୟ । ଓଁ ନମୋ ମାତଃ ପାର୍ବତୀ ।
ବନ୍ଦେ ଦେବ ଉମାପତିଂ ସୂରଗୁରୁଂ
ବନ୍ଦେ ଜଗତ କାରଣଂ ।
ବନ୍ଦେ ପନ୍ନଗ ଭୂଷଣଂ ମୃଗଧରଂ
ବନ୍ଦେ ପଶୁନା ପତିଂ ।
ବନ୍ଦେ ସୂର୍ଯ୍ୟ ଶଶାଙ୍କ ବହ୍ନି ନୟନଂ
ବନ୍ଦେ ମୁକୁନ୍ଦ ପ୍ରୀୟଂ ।
ବନ୍ଦେ ଭକ୍ତଜନାଶ୍ରୟଂ ଚ ବରଦଂ
ବନ୍ଦେ ଶିବଂ ଶଙ୍କରଂ ।

(ଫେରେ ଧ୍ୟାନ କରନ୍ତୁ ଓ ନୃତ୍ୟ ତାଣ୍ଡବ ଗାନ କରନ୍ତୁ)

**ଓଁ ନମଃ ଶିବାୟ । ଓଁ ନମୋ ମାତଃ ପାର୍ବତୀ ।**

**ଓଁ ଗଂ ଗଂ ଗଂ ଗଢ଼ିତଂ ଗଢ଼ିତଂ କରଧର କରତାଳି ନନ୍ଦି ଭୃକୁଟି ଦତ୍ୟଭାଳି, କିହେ ଗଣନାଥଂ, କିଂ ମାରିୟଂ ଭୃଙ୍ଗମ୍ ଭୃଙ୍ଗମ୍ ନାଚନ୍ତି ଶିବ ଲିଙ୍ଗମ୍ ଶିବସ୍ୟ ତଝଲି ବଜାନ୍ତି ଅତି ଉଜ୍ୱଳେ ଜଝୈ ପରଂବ୍ରହ୍ମଂ, ହାଚର୍ଚର ଚାରୁ ଦୁଦଂ ଦୁଦୁଂ କାମବନ୍ଦଂ, ତାତୈଧେ ଧିନାକିଟା ଧିନାକିଟା ତାତ୍ତା-ଧେ-ଧିନାକିଟା ମର୍ମଗର୍ଧକଟମ୍ ଥେୟଂଥମ୍ ଶିବଂ ଇଶ୍ୱରଂ, ହଂ ବିଚିତ୍ର ତାଣ୍ଡବ ଘଟଘଟେ । ଇତି ଶ୍ରୀ ନୃତ୍ୟ ତାଣ୍ଡବ ସମାପ୍ତଂ ।**

(ବର୍ତ୍ତମାନ ଭାବନ୍ତୁ ଯେ - ଫେର୍ ଶ୍ରୀ ଶିବ-ପାର୍ବତୀଙ୍କର ଚାରିପଟେ ପ୍ରଦକ୍ଷିଣ କରୁଛନ୍ତି ଅର୍ଥାତ୍ କୈଳାସ ପର୍ବତର ଚାରିପଟେ ପ୍ରଦକ୍ଷିଣ କରିକରି ରାବଣକୃତ ଶିବ ତାଣ୍ଡବ ଗାନ କରୁଛନ୍ତି । ଶିବ ତାଣ୍ଡବରେ ଗୋଟିଏ ଗୋଟିଏ ପାଦରେ ଚାରିଧାଡ଼ି ଅଛି । ଗୋଟିଏ ଗୋଟିଏ ଧାଡ଼ିକୁ କୈଳାସ ପର୍ବତର ଗୋଟିଏ ଗୋଟିଏ ଦିଗରେ ବୁଲିବା ସମୟରେ ଗାନ କରନ୍ତୁ ଅର୍ଥାତ୍ କୈଳାସ ପର୍ବତର ଚାରିଦିଗରେ ଚାରୋଟି



ଧାଡ଼ିକୁ ଗୋଟିଏ ଗୋଟିଏ କରି ଗାନ କରନ୍ତୁ । ଶ୍ରୀ ଶିବ ଭଗବାନ୍‌ଙ୍କର ସମ୍ମୁଖରୁ ରାବଣକୃତ୍ୟ ଶ୍ରୀ ଶୀବ ତାଣ୍ଡବ ଗାନ କରିବା ଆରମ୍ଭ କରନ୍ତୁ ।)

**ଜଟାଟବି ଗଳଜ୍ୱଳ ପ୍ରବାହ ପ୍ଲାବିତସ୍ଥଳେ - (ପୂର୍ବ)**
**ଗଳେବଲମ୍ବ୍ୟ ଲମ୍ବିତଂ ଭୂଜଙ୍ଗ ତୁଙ୍ଗ ମାଳିକାଂ - (ଦକ୍ଷିଣ)**
**ଡମଡମ ଡମଡମ ନିନାଦ ମନ୍ତମବ୍ୟାୟଂ - (ପଶ୍ଚିମ)**
**ଚକାର ଚଣ୍ଡତାଣ୍ଡବଂ ତନୋତୁନଃ ଶିବ ଶିବଂ - (ଉତ୍ତର) । ୧ ।**

**ଜଟାକଟାହସମ୍ଭ୍ରମ ଭ୍ରମନିର୍ଲିମ୍ପ ନିର୍ଝରୀ**
**ବିଲ୍ଲୋଳ ବୀଚିବଲ୍ଲରୀ ବିରାଜମାନ ମୁର୍ଦ୍ଧନୀ**
**ଧଗଦ୍ଧଗଦ୍ଧଗଜ୍ୱଳ ଲଲାଟ ପଟ୍ଟ ପାବକେ**
**କିଶୋର ଚନ୍ଦ୍ର ଶେଖରେ ରତିଃ ପ୍ରତିକ୍ଷଣଂ ମମ । ୨ ।**

ଧରାଧରେନ୍ଦ୍ର ନନ୍ଦିନୀ ବିଳାସ ବନ୍ଧୁବନ୍ଧୁର
ସ୍ଫୁର ଦିଗନ୍ତ ସନ୍ତତି ପ୍ରମୋଦ ମାନମାନସେ
କୃପାକଟାକ୍ଷ ଧୋରଣୀ ନିରୁଦ୍ଧ ଦୁର୍ଦ୍ଧରାପଦି
କ୍ୱଚି ଦିଗମ୍ବରେ ମନୋ ବିନୋଦ ମେତୁ ବସ୍ତୁନି । ୩ ।

ଜଟା ଭୂଜଙ୍ଗ ପିଙ୍ଗଳ ସ୍ଫୁରତ୍ ଫଣାମଣୀ ପ୍ରଭା
କଦାମ୍ବ କୁଙ୍କୁମ ଦ୍ରବ ପ୍ରଲିପ୍ତଦିଗ ବଧୂମୁଖେ
ମଦାନ୍ଧ ସିନ୍ଧୁରାସ୍ଫୁରେ ଉଗୁତ୍ତରୀୟ ମେଦୁରେ
ମନୋବିନୋଦ ମଦ୍‌ଭୂତଂ ବିଭର୍ତ୍ତୁ ଭୂତ ଉର୍ତ୍ତୁରୀ । ୪ ।



ଲଲାଟ ଚତ୍ୱରଜ୍ୱଳଂ ଦ୍ୱନଞ୍ଜୟ ସ୍ଫୁଲିଙ୍ଗଭା
ନିପିତ ପଞ୍ଚଶାୟଙ୍କ ନମନ୍ନିର୍ଲିମ୍ପ ନାୟଙ୍କ
ସୁଧାମୟୁଖେଲେଖୟା ବିରାଜମାନ ଶେଖରଂ
ମହାକପାଳୀ ସମ୍ପଦେ ଶିରୋ ଜଟାଳ ମସ୍ତୁନଃ । ୫ ।

ସହସ୍ର ଲୋଚନ ପ୍ରଭୃତ୍ୟ ଶେଷ ଲେଖ ଶେଖର
ପ୍ରସୂନ ଧୂଳିଧୋରଣୀ ବିଧୂସରାଂଢ଼ ଘ୍ରିପୀଠଭୂଃ
ଭୂଜଙ୍ଗ ରାଜମାଳୟା ନିବଦ୍ଧ ଜାଟଜୁଟ କଃ
ଶ୍ରିୟୈ ଚିରାୟ ଜାୟତାଂ ଚକୋର ବନ୍ଧୁଶେକରଃ । ୬ ।

କରାଳ ଭାଲପଟ୍ଟିକା ଧଗଦ୍ଧଗ ଦ୍ଧଗର୍ଜ୍ଜ୍ୱଳ
ଧନଞ୍ଜୟା ହୁତିକୃତଂ ପ୍ରଚଣ୍ଡ ପଞ୍ଚସାୟକେ
ଧରାଧରେନ୍ଦ୍ର ନନ୍ଦିନୀ କୁଚାଗ୍ର ଚିତ୍ରପତ୍ରକ
ପ୍ରକଳ୍ପ ନୈକଶିଳ୍ପିନୀ ତ୍ରୀଲୋଚନେ ରତିମର୍ମ । ୭ ।

ନବୀନ ମେଘମଣ୍ଡଳୀ ନିରୁଦ୍ଧ ଦୁର୍ଦ୍ଧର ସ୍ଫୁରତ୍
କୁହୁର୍ନିଶୀଥିନୀତମଃ ପ୍ରବନ୍ଧ ବନ୍ଧକନ୍ଦରଃ
ନିର୍ଲିମ୍ପ ନିର୍ଝରୀ ଧରସ୍ତନୋତୁ କୃତ୍ତିସିନ୍ଧୂରଃ
କଳାନିଧାନ ବନ୍ଧୁରଃ ଶ୍ରିୟଜଗତ୍ ଦ୍ଧୁରନ୍ଧରଃ । ୮ ।



ପ୍ରଫୁଲ୍ଲ ନୀଳପଙ୍କଜ ପ୍ରପଞ୍ଚ କାଳିମ ପ୍ରଭା
ବିଲମ୍ବି କଣ୍ଠକନ୍ଦଳୀ ରୁଚି ପ୍ରବନ୍ଧ କନ୍ଦରଂ
ସ୍ମରଚ୍ଛିଦଂ ପୁରଚ୍ଛିଦଂ ଭବଚ୍ଛିଦଂ ମଖଚ୍ଛିଦଂ
ଗଜଚ୍ଛିଦାନ୍ଧ କଚ୍ଛିଦଂ ତମନ୍ତ କଚ୍ଛିଦଂ ଭଜେ । ୯ ।

ଅଖର୍ବ ସର୍ବମଙ୍ଗଳା କଳା କଦମ୍ବ ମଞ୍ଜରୀ
ରସ ପ୍ରବାହ ମାଧୁରୀ ବିଜୟଣା ମଧୂବ୍ରତଂ
ସ୍ମରାନ୍ତକଂ ପୁରାନ୍ତକଂ ଭବାନ୍ତକଂ ମଖାନ୍ତକଂ
ଗଜାନ୍ତ କାନ୍ଧକାନ୍ତକଂ ତମନ୍ତଂ କାନ୍ତକଂ ଭଜେ । ୧୦ ।

ଜୟତ୍ୱଦ ଭ୍ରାବିଭ୍ରମ ଭୂଜଙ୍ଗମ ଶ୍ୱସଦ୍ୱିନି
ର୍ଗମକ୍ରମ ସ୍ଫୁରତ୍ କରାଳ ଭାଲହବ୍ୟ ବାଟଜ୍ୱଳଦ୍
ଧିମିଂ ଧିମିଂ ଧିମିଂ ଧ୍ୱନନ୍ ମୃଗଙ୍ଗ ତୁଙ୍ଗ ମଙ୍ଗଳ
ଧ୍ୱନିକ୍ରମ ପ୍ରବର୍ତ୍ତିତ ପ୍ରଚଣ୍ଡ ତାଣ୍ଡବ ଶିବଃ । ୧୧ ।

ଦୃଷଦ୍ ବିଚିତ୍ର ତଳ୍ପୟୋ ର୍ଭୂଜଂଗ ମୌକ୍ତିକସ୍ରଜୋ
ଗରିଷ୍ଠ ରତ୍ନଲୋଷ୍ଠୟୋଃ ସୁହୃଦି ପକ୍ଷ ପକ୍ଷୟୋଃ
ତୃଷାରବିନ୍ଦୁ ଚକ୍ଷୁଷୋଃ ପ୍ରଜାମହି ମହେନ୍ଦ୍ରୟୋଃ
ସମପ୍ରବୃତ୍ତିକଃ ସଦାଂ ସଦାଶିବଂ ଭଜାମ୍ୟହଂ । ୧୨ ।



କଦା ନିର୍ଲିମ୍ପ ନିର୍ଝରୀ ନିକୁଞ୍ଜ କୋଟରେ ବସନ୍
ବିମୁକ୍ତ ଦୁର୍ଗତିଃ ସଦା ଶିରଃସ୍ଥ ମଞ୍ଜଳି ବହନ୍
ବିଲ୍ଲୋଳ ଲୋଳଲୋଚନେ ଲଲାମ ଭାଲ-ଲଗ୍ନକଃ
ଶିବେତି ମନ୍ତ୍ର ମୁଚରନ କଦା ସୁଖି ଭଜାମ୍ୟହଂ । ୧୩ ।

ନିର୍ଲିମ୍ପ ନାଥନାଗରୀ କଦମ୍ବ ମୌଳି ମଲ୍ଲିକା
ନିଗୁମ୍ଫ ନିର୍ଭରକ୍ଷର ନଧୁଷ୍ଣିକା ମନୋହର
ତନୋତୁନୋ ମନମୁଦଂ ବିନୋଦିନି ମହର୍ନିଶୀଂ
ପରିଶ୍ରୟଃ ପରଂପଦଂ ତଦଙ୍ଗଜ ତିଷାଂଚୟଃ । ୧୪ ।

ପ୍ରଚଣ୍ଡ ବାଡ଼ବାନଳ ପ୍ରଭାଶୁଭ ପ୍ରଚାରଣେ
ମହାଷ୍ଟ ସିଦ୍ଧକାମିନି ଜନା ବଧୂତ ଜଳ୍ପନା
ବିଭକ୍ତ ବାମଲୋଚନା ବିବାହ କାଳିକ ଧ୍ୱନି
ଶିବେତି ମନ୍ତ୍ର ଭୂଷଣାଂ ଜଗତ୍ ଜୟାୟ ଜାୟତାଂ । ୧୫ ।

ନମାମି ପାର୍ବତୀ ପତିଂ ନମାମି ଜାହ୍ନବି ପତିଂ
ନମାମି ଭକ୍ତ ବତ୍ସଳଂ ନମାମି ରକ୍ତ ଲୋଚନଂ
ନମାମି ଚନ୍ଦ୍ରଶେଖରଂ ନମାମି ଦୁଃଖ ମୋଚନଂ
ତଦିୟ ପାଦପଙ୍କଜଂ ସ୍ମରାମ୍ୟହଂ ମହେଶ୍ୱରଂ । ୧୬ ।



ରାବଣେନ କୃତଂସ୍ତୋତ୍ରଂ ଯଃ ପଠେତ୍ ଶିବ ସନିଦ୍ଧୌ
ବାଞ୍ଛିତାଂ ସଃ ପ୍ରାପ୍ତି ର୍ଭବତି ଅନ୍ତିମେ ଶିବଲୋକଂ ସଗଚ୍ଛତି ।
ଇତି ଶ୍ରୀ ପୃଥିବୀ ପ୍ରସିଦ୍ଧ ବୈଜ୍ଞାନିକ ଦଶବଦନ କୃତଂ ଶ୍ରୀ ଶିବ ତାଣ୍ଡବ ସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।

(ବର୍ତ୍ତମାନ ନିଜର ଇହ ଜନ୍ମ ଓ ଆସନ୍ତା ଜନ୍ମ ପାଇଁ ଧନ, ଜନ, ଗୋପ, ଲକ୍ଷ୍ମୀ, ଐଶ୍ୱର୍ଯ୍ୟ, ବୈଭବ, ମାନସମ୍ମାନ ଏବଂ ଐଶ୍ୱରୀକ ଶକ୍ତିର ଅଧିକାରୀ ହେବାପାଇଁ ପରମ ଶିବଭକ୍ତ ରାବଣଙ୍କ ଦ୍ୱାରା ରଚିତ ଅମୋଘ ମନ୍ତ୍ରକୁ କୈଳାସରେ ଶ୍ରୀ ଶିବ-ପାର୍ବତୀଙ୍କ ସମ୍ମୁଖରେ ଜପକରି ଶ୍ରୀ ଶିବ-ପାର୍ବତୀଙ୍କୁ ପ୍ରସନ୍ନ କରନ୍ତୁ ।)

ଓଁ ନମଃ ଶିବାୟ । ଓଁ ନମୋ ମାତଃ ପାର୍ବତୀ ।
ବନ୍ଧୁକାଭଂ ତ୍ରୀନେତ୍ରଂ ଶଶୀସକଳ ଧରଂ ସ୍ମେରଂ ବକ୍ତ୍ରଂ ବହନ୍ତଂ ।

**ହସ୍ତଃଶୂଳଂ କପାଳଂ ବରଦଂ ଭୟଦଂ**

**ଚାରୁହାସଂ ନମାମୀ ।**

**ବାମରୁ ସ୍ତମ୍ଭଗାୟାଃ କରତଳ ବିଲସ୍‌ଚାରୁ**

**ରକ୍ତୋତ୍ପୋଳାୟାଃ ।**

**ହସ୍ତେ ନାଶ୍ଳୀଷ୍ଟ ଦେହ ମଣିମୟ ବିଲସତ୍**

**ଭୂଷଣାୟାଃ ପ୍ରୀୟାୟାଃ ।**

**ବଂ ବଂ ଭୋଲେ ହର ହର ମହାଦେବ ........ ।**

**ଭୋ ପରମ ପିତା ପରମଆତ୍ମା ଜ୍ୟୋତିର୍ମୟ ଶିବ, ଆପ୍ ପ୍ରସନ୍ନ ହୋ କର୍ ଇସ୍ ସ୍ୱର୍ଣ୍ଣଖର୍ପର ସିଦ୍ଧି ମନ୍ତ୍ରକୁ ଅକିଳିତ୍ କର ତେ ହୁଏ, ମୁଝେ ପୂର୍ଣ୍ଣ ସଫଳତା ପ୍ରଦାନ କରେ, ଜିସ୍ ସେ କି ମୈ, ଆପନା ଜୀବନ ମେ ଯୈସେ କି ଆପ ଚିନ୍ତାରହିତ୍ ହୈ, ଜିସ୍ ପ୍ରକାର ଆପ ମସ୍ତ ହେି, ଜିସ୍ ପ୍ରକାର**



**ଆପ୍ ଆନନ୍ଦ ଯୁକ୍ତ ହେି, ଜିସ୍ ପ୍ରକାର ଆପ୍ ଶକ୍ତିକେ ଅଧିପତି ହୈ, ଜିସ୍ ପ୍ରକାର ଆପ୍ କେ ଘର୍ ମେଁ ଗଣେଶ ଜୈସା ପୁତ୍ର ହେି, ଜିସ୍ ପ୍ରକାର ଆପ ନିର୍ଭିକ ନିଶ୍ଚିନ୍ତ ନିରାପଦ ହୈ, ରୋଗ ରହିତ ହେି, ବୈଦ୍ୟନାଥ ହେି, ଐସା ହିଁ ଜୀବନ ମୁଝେ ପ୍ରାପ୍ତ ହୋ ଔର ମେରା ଜୀବନ ନିଶ୍ଚିନ୍ତତା, ନିର୍ଭିକତା ଔର ଐଶ୍ୱର୍ଯ୍ୟ ସେ ପରିପୂର୍ଣ୍ଣ ହୋ ।**

**ଓଁ ଶ୍ରୀଂ ହ୍ରୀଂ ହ୍ରୀଂ ସୂର୍ଣ୍ଣଖର୍ପର ସିଦ୍ଧିଂ  କନକଧାରା ହ୍ରୀଂ ହ୍ରୀଂ ଶ୍ରୀଂ ଓଁ ।**

ଉପରୋକ୍ତ ମନ୍ତ୍ରକୁ ତିନି ଥର ନତୁବା ୧୦୮ ଥର ଜପ କରନ୍ତୁ ।

**ଓଁ ନମଃ ଶିବାୟ । ଓଁ ନମୋମାତଃ ପାର୍ବତୀ ।**

ବର୍ତ୍ତମାନ ଭାବନ୍ତୁ ଭଗବାନ ଶିବଙ୍କର ଜଟାରୁ ପତିତ ଗଙ୍ଗା ଜଳରେ ଭାସିଭାସି ବାରଣସୀର ଗଙ୍ଗାନଦୀ ବରୁଣା ଘାଟ କୂଳରେ ପହଞ୍ଚିଲି ।

# ଶ୍ରୀ କାଶୀ ବିଶ୍ୱନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ



[ **ସୂଚନା:** ଉତ୍ତର ପ୍ରଦେଶର ବନାରସ ଠାରେ ଗଙ୍ଗାନଦୀ ସହିତ ଅନ୍ୟ ଦୁଇ ନଦୀ ବରଣା ଓ ଅସୀ ମିଳିତ ସଙ୍ଗମସ୍ଥଳିକୁ ବାରାଣସୀ କୁହାଯାଏ । ଅତୀତ କାଳରେ କାଶ ଜାତିର ଲୋକେ ଏଠାରେ ବାସ କରୁଥିବାରୁ ଏବଂ ଏଠାରେ ପ୍ରତିଦିନ ବ୍ରହ୍ମ ଜ୍ୟୋତି ପ୍ରକାଶ ହେଉଥିବାରୁ, ଏହି ନଗରୀକୁ କାଶୀ ମଧ କୁହାଯାଏ । ବନାର ନାମକ ଜଣେ ରାଜା ଏହି ନଗରର ବହୁତ ଉନ୍ନତି କରିଥିଲେ । ତେଣୁ ଏହାକୁ ବନାରସ ମଧ କୁହାଯାଏ ।

ଏହି ସହରର ଭୌଗୋଳିକ ଆକାର ଭଗବାନ୍ ଶିବଙ୍କର ତ୍ରୀଶୂଳ ସଦୃଶ୍ୟ ହୋଇଥିବାରୁ ଏହାକୁ ଶିବପୁରୀ କୁହାଯାଏ । ଏଠାରେ ସ୍ୱୟଂ ଶିବ ଭଗବାନ୍, ମାତା ଅନ୍ନପୂର୍ଣ୍ଣାଙ୍କ ସହିତ ଶ୍ରୀ ବିଶ୍ୱନାଥ ଜ୍ୟୋତିର୍ଲିଙ୍ଗ ରୂପରେ ସଦାସର୍ବଦା ବାସ କରନ୍ତି । ତେଣୁ ଏଠାରେ କେହି ଭକ୍ତ ଭୋକରେ ରହିଯାଏ ନାହିଁ ।



ଏହି ନଗରର ସମ୍ରାଟ ହେଉଛନ୍ତି ସ୍ୱୟଂ ଶିବ ବା କାଶି-ବିଶ୍ୱନାଥ, ମହାମନ୍ତ୍ରୀ - ଶ୍ରୀ ହରେଶ୍ୱର, ପ୍ରବଚକ - ଶ୍ରୀ ବ୍ରହ୍ମେଶ୍ୱର, ରକ୍ଷକ - ଶ୍ରୀ ଭୈରବୀ, ଏବଂ ଚୌକିଦାର - ଶ୍ରୀ ଦଣ୍ଡପାଣି ଅଟନ୍ତି । ତେଣୁ ପ୍ରଳୟ କାଳରେ ମଧ ଏହି ନଗରଟି ଅକ୍ଷୟ ରହେ । ଏଠାରେ କେହି ଦେହ ତ୍ୟାଗ କଲେ ତା'ର ପୂନଃର୍ଜନ୍ମ ହୁଏ ନାହିଁ । କାରଣ ପ୍ରାଣୀ ଦେହତ୍ୟାଗ ସମୟରେ ସଦାଶିବ ତା'ର କାନରେ ତାରକ ମନ୍ତ୍ର ପାଠ କରନ୍ତି ।

ଭଗବାନ୍ ସଦାଶିବ ଜ୍ଞାନର ମୁଖ୍ୟ ଦେବତା ହୋଇଥିବାରୁ ବହୁ ଯୋଗୀ, ସାଧକ ଓ ଭକ୍ତଗଣ କାଶୀ - ବନାରସରେ ରହି ସାଧନା କରି ସିଦ୍ଧିଲାଭ କରନ୍ତି । କାଶି-ବନାରସ ହିନ୍ଦୁ ୟୁନିର୍ଭସିଟି ବିଶ୍ୱବିଖ୍ୟାତ ଅଟେ । ଗୋସ୍ୱାମୀ ତୁଳସି ଦାସଙ୍କର ଆଶ୍ରମ ଓ ମନ୍ଦିର ଏଠାରେ ଅଛି ।

ଭଗବାନ୍ ବିଷ୍ଣୁ ଏଠାରେ ଦୀର୍ଘକାଳ ତପସ୍ୟା କରିଥିଲେ ଏବଂ ଯେଉଁ ଜାଗାରେ ତାଙ୍କର କାନର ମାଣିକ୍ୟ କୁଣ୍ଡଳ ପଡ଼ିଯାଇଥିଲା ସେହି ସ୍ଥାନକୁ ମଣି କର୍ଣ୍ଣିକା ଘାଟ କୁହାଯାଉଛି । ୫୧ଟି ଶକ୍ତି ପିଠ ମଧ୍ୟରୁ ଏଠାରେ ଥିବା ବିଶାଳାକ୍ଷୀ ଦେବୀଙ୍କ ଶକ୍ତିପୀଠ ଅନ୍ୟତମ ଅଟେ । ମଣିକର୍ଣ୍ଣିକା ଘାଟରେ ଥିବା ଶ୍ମଶାନ ଭୂମି ଜ୍ଞାନ ସାଧନ ପାଇଁ ଉତ୍ତମ ସ୍ଥାନ ଅଟେ । ଏଠାରେ ବସି କିଛିଦିନ ସାଧନା କଲେ ଜ୍ଞାନ ଓ ବିବେକ ଜାଗ୍ରତ ହୁଏ ।

କାଶିରେ ଅନେକ ଘାଟ ରହିଛି । ସେଥି ମଧ୍ୟରୁ ଅନ୍ତତଃ ବରୁଣା ଘାଟ ଓ ମଣିକର୍ଣ୍ଣିକା ଘାଟରେ ସ୍ନାନ କରି ଶ୍ରୀ ବିଶ୍ୱନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ କରିବା ଉଚିତ । ]

**ଓଁ ନମଃ ବିଶ୍ୱନାଥାୟ ।** ଏହି ମନ୍ତ୍ର ଜପି ଜପି ମନେମନେ ବୃଷଭ ଦର୍ଶନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ । ତା'ପରେ ଶ୍ରୀ ବିଶ୍ୱନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ ।

## ଶ୍ରୀ ବୈଦ୍ୟନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ



[ **ସୂଚନା:** ବିହାର ରାଜ୍ୟର ଦେବଗଡ଼ ଜିଲ୍ଲାର ଜସିଡ଼ି ରେଳ ଷ୍ଟେସନ୍‌ରେ ଓହ୍ଲାଇ ୨୫ କିଲୋମିଟର ଦୂରରେ ଥିବା ସୁଲତାନ୍‌ଗଞ୍ଜରେ ପ୍ରବାହିତ ଗଙ୍ଗା ନଦୀରେ ସ୍ନାନ କରି ଗଙ୍ଗାଜଳ ସାଥିରେ ଧରି ବାବାଧାମକୁ ଯିବା ଉଚିତ୍ । ଶ୍ରୀ ବୈଦ୍ୟନାଥ ଧାମରେ ପହଞ୍ଚିବା ପରେ ମନ୍ଦିର ବେଢ଼ା ଭିତରେ ଥିବା ଶିବ-ଗଙ୍ଗା କୁଣ୍ଡରେ ଫେରେ ସ୍ନାନକରି ଶ୍ରୀ ବୈଦ୍ୟନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ କରିବେ ଓ ସୁଲ୍‌ତାନ୍ ଗଞ୍ଜରୁ ଆଣିଥିବା ଗଙ୍ଗାଜଳରେ ଅଭିଷେକ କରିବେ ।



ଏହି ମନ୍ଦିର ବେଢ଼ା ଭିତରେ ବହୁ ଦେବାଦେବୀଙ୍କ ପ୍ରତିମା ପୂଜା ପାଉଥିବାର ଦେଖିବାକୁ ପାଇବେ । ଶ୍ରୀ ବୈଦ୍ୟନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ ପରେ ଏଠାରୁ ୩୫ କିଲୋମିଟର ଦୂରରେ ଥିବା ଶ୍ରୀ ବାସୁକିନାଥ ଭଗବାନ୍‌ଙ୍କୁ ଦର୍ଶନ କଲେ ମନବାଞ୍ଛା ସିଦ୍ଧି ହୋଇଥାଏ । ]

ଓଁ ନମଃ ବୈଦ୍ୟନାଥୟ । ଏହି ମନ୍ତ୍ର ଜପି ଜପି ମନେ ମନେ ବୃଷଭ ଦର୍ଶନ କରି ବିଲ୍ୱପତ୍ର ଅର୍ପଣ କରନ୍ତୁ ତା'ପରେ ଶ୍ରୀ ବୈଦ୍ୟନାଥ ଜ୍ୟୋତିର୍ଲିଙ୍ଗ ଦର୍ଶନ କରି ବିଲ୍ୱପତ୍ର ଅର୍ପଣ କରନ୍ତୁ ।

## ଘଟଗାଁରେ ମାଁ ଶଙ୍କଟ ତାରିଣୀଙ୍କ ଦର୍ଶନ



[ **ସୂଚନା:** ଭକ୍ତ ଶଙ୍କଟରେ ପଡ଼ି ମା'ଙ୍କୁ ଡାକିଲେ, ମା ଭକ୍ତଙ୍କର ଶଙ୍କଟକୁ ଶୀଘ୍ର ତାରଣ କରନ୍ତି ବୋଲି ମାଙ୍କୁ ଶଙ୍କଟ ତାରିଣୀ କୁହାଯାଏ ।

ମାଁ ଶଙ୍କଟ ତାରିଣୀଙ୍କର ନାମ ଶୁଣିଲେ ଯେପରି ଚମତ୍କାର ଲାଗେ, ମାଁଙ୍କର ଶକ୍ତିପୀଠ ଘଟଗାଁର ନାମ ବି ଚମତ୍କାର ଅଟେ, ମାଁଙ୍କର ରୂପ ଓ ମହିମା

ମଧ୍ୟ ସେହିପରି ଚମତ୍କାର ଅଟେ । ଆପଣଙ୍କୁ ଅବିଶ୍ୱାସ ଲାଗୁଥିଲେ, ତାରିଣୀ ମାଁଙ୍କର ଗୋଟିଏ ଫୋଟ ରାସ୍ତା କଡ଼ରେ ଥିବା ପଥର ଉପରେ ରଖିଦେଇ ଦୁଇଦିନ ପରେ ଦେଖନ୍ତୁ ମାଁଙ୍କ ଫୋଟ ପାଖରେ କେହିନା କେହି ନଡ଼ିଆ ସମର୍ପି ଯାଇଥିବ । ଏଥର ଆପଣଙ୍କ ବିଶ୍ୱାସ ଆସିଯିବ ।

ମୁଁ ଯେଉଁମାନଙ୍କୁ ମାଁ ତାରିଣୀଙ୍କ ନାମ ସୁମରଣା କରି କାର୍ଯ୍ୟ ଆରମ୍ଭ କରିବାକୁ କହିଛି, ସେମାନେ ଚମତକ୍ାର ଭାବେ କାର୍ଯ୍ୟରେ ସଫଳ ହୋଇଛନ୍ତି ଏବଂ ସେଥିରେ ମୁଁ ଚକିତ ହୋଇଯାଇଛି ।

ମାଁ ଶଙ୍କଟ ତାରିଣୀଙ୍କୁ ଦର୍ଶନ କରିବା ପାଇଁ ଯିବାକୁ ହେଲେ ଭୁବନେଶ୍ୱରର ବରମୁଣ୍ଡା ବସ୍‌ଷ୍ଟାଣ୍ଡରୁ ବସ୍‌ରେ ବସି କଟକ, ଚଣ୍ଡିଖୋଲ, ଯାଜପୁର ରୋଡ଼ ଓ ଆନନ୍ଦପୁର ଦେଇ ଘଟଗାଁରେ ପହଞ୍ଚିବାକୁ ପଡ଼େ । ମୁଖ୍ୟ ରାସ୍ତା କଡ଼ରେ ହିଁ ମାଁଙ୍କର ମନ୍ଦିର ନିର୍ମିତ ହୋଇଛି । କିନ୍ତୁ ମାଁଙ୍କର ଚମତ୍କାର ପାଷାଣ ମୂର୍ତ୍ତି ସାହାଡ଼ା ଗଛ ମୂଳେ ସ୍ୱୟଂ ପ୍ରକଟିତ ହୋଇଛନ୍ତି ।



ମାଁଙ୍କର ପୂଜା ପଦ୍ଧତି ଅତି ବିଚିତ୍ର । ମାଁଙ୍କର ସମ୍ମୁଖରେ ପୂଜାରୀମାନେ ବତୁରା ଚାଉଳରେ ତନ୍ତ୍ରୋକ୍ତ ମଣ୍ଡଳକାଟି ତା' ଉପରେ ଭକ୍ତମାନଙ୍କର ନଡ଼ିଆ ରଖି ନିଷ୍ଠାରସହିତ ମାଁଙ୍କୁ ପୂଜା କରନ୍ତି । ଆହୁରି ଗୋଟିଏ ଖୁସିର କଥା - ଏଠାରେ ପୂଜକମାନେ ଦକ୍ଷିଣା ମାଗନ୍ତି ନାହିଁ ।

ମାଁଙ୍କର ଶକ୍ତିପୀଠକୁ ପ୍ରତିଦିନ ହଜାର ହଜାର ଭକ୍ତ ଦର୍ଶନ ପାଇଁ ଆସିଥାନ୍ତି । ପ୍ରତିଦିନ ଦୂର-ଦୂରାନ୍ତର ବିଭିନ୍ନ ସ୍ଥାନରୁ ପ୍ରାୟ ୫୦୦୦ (ପାଞ୍ଚ ହଜାର) ନଡ଼ିଆ ମାଁଙ୍କର ଭୋଗପାଇଁ ଏଠାକୁ ଆସିଥାଏ - ଯାହାକି ପୃଥିବୀର ଅନ୍ୟ କୌଣସି ଆଧ୍ୟାତ୍ମିକ ସ୍ଥଳିରେ ଦେଖିବାକୁ ମିଳିବ ନାହିଁ ।

**ମାଁ ଶଙ୍କଟ ତାରିଣୀଙ୍କ ମହିମା ଯେତେ ବଖାଣିଲେ ମଧ୍ୟ ଶେଷ ହେବ ନାହିଁ ।]**

ଓଁ ନମୋ ମାତଃ ଶଙ୍କଟ ତାରିଣୀ । ଏହି ମନ୍ତ୍ର ମନେ ମନେ ଜପି ଜପି ମାଁଙ୍କୁ ଦର୍ଶନ କରନ୍ତୁ ଓ ମନ୍ଦାର ଫୁଲ ଅର୍ପଣ କରନ୍ତୁ ଏବଂ ନଡ଼ିଆ ଭୋଗ ଲଗାନ୍ତୁ । ତା'ପରେ ମାଁଙ୍କର ଦକ୍ଷିଣ ପଟେ ଶ୍ରୀ ଘଟକେଶ୍ୱର ଭଗବାନ୍‌ଙ୍କୁ ଦର୍ଶନ କରି ଓଁ ନମଃ ଘଟକେଶ୍ୱରାୟ; ଏହି ମନ୍ତ୍ର ମନେମନେ ଜପି ବିଲ୍ୱପତ୍ର ଅର୍ପଣ କରନ୍ତୁ । ତା'ପରେ ଦୁଇ ହାତ ଯୋଡ଼ି ନିଜର ଅଭିଷ୍ଟ ଜଣାଇ ସାଷ୍ଟାଙ୍ଗ ଦଣ୍ଡବତ କରନ୍ତୁ ।

## ଶ୍ରୀ ଜଗନ୍ନାଥ ଧାମ ଦର୍ଶନ





[**ସୂଚନା:** ଆମ ରାଜଧାନୀ ମନ୍ଦିର ମାଳିନୀ ଭୁବନେଶ୍ୱର ଠାରୁ ପୁରୀ ଜଗନ୍ନାଥ ଧାମ ମାତ୍ର ୬୦ କିଲୋମିଟର ଅଟେ । ସବୁବେଳେ ବସ୍ ଯାତାୟତର ବହୁତ ସୁବିଧା ଅଛି । ଭୁବନେଶ୍ୱର ବିନ୍ଦୁ ସାଗରରେ ସ୍ନାନ କରି ଶ୍ରୀ ଲିଙ୍ଗରାଜଙ୍କୁ ଦର୍ଶନ କରିବା ପରେ ହିଁ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରିବା ଉଚିତ । କାରଣ ଶ୍ରୀ ବିଷ୍ଣୁଙ୍କର ଅତି ପ୍ରିୟ ହେଉଛନ୍ତି ଶ୍ରୀ ଶିବ । ତେଣୁ ଯେତେ ଥର ଭଗବାନ୍ ବିଷ୍ଣୁ ଏହି ସଂସାରରେ ଅବତୀର୍ଣ୍ଣ କରନ୍ତି ସେ ଭଗବାନ୍ ଶିବଙ୍କର ଆରାଧନା କରି କରି ହିଁ ଧର୍ମ ସଂସ୍ଥାପନା କରିଥାନ୍ତି ।

ଭଗବାନ୍ ଶିବଙ୍କର ଯେପରି ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ କ୍ଷେତ୍ର ରହିଛି, ଭଗବାନ୍ ବିଷ୍ଣୁଙ୍କର ମଧ୍ୟ ସେହିପରି ଭାରତର ଚାରି ଦିଗରେ ଚାରିଧାମ ରହିଛି । ସେହି ଧାମ ଗୁଡ଼ିକ ହେଲା - ଉତ୍ତରାଖଣ୍ଡ ରାଜ୍ୟରେ ବଦ୍ରିନାଥ ଧାମ, ତାମିଲନାଡୁ ରାଜ୍ୟରେ ରାମେଶ୍ୱର ଧାମ, ଗୁଜରାଟ୍ ରାଜ୍ୟରେ ଦ୍ୱାରକା ଧାମ ଏବଂ ଓଡ଼ିଶା ରାଜ୍ୟରେ ଜଗନ୍ନାଥ ଧାମ ଜଗତ୍ ବିଖ୍ୟାତ ଅଟେ ।

ସତ୍ୟ ଯୁଗରେ ବଦ୍ରିନାଥ ଧାମର ମାହାତ୍ମ୍ୟ ଶ୍ରେଷ୍ଠ ଥିଲା, ତ୍ରେତୟା ଯୁଗରେ ରାମନାଥ ଧାମର ମାହାତ୍ମ୍ୟ ଶ୍ରେଷ୍ଠ ଥିଲା, ଦ୍ୱାପର ଯୁଗରେ ଦ୍ୱାରକା ଧାମର ମହାତ୍ମ୍ୟ ଶ୍ରେଷ୍ଠ ଥିଲା । ଆମର ଏହି କଳୀଯୁଗରେ

ସବୁଠୁ ଶ୍ରେଷ୍ଠ ଧାମ ହେଉଛି ଜଗନ୍ନାଥ ଧାମ ଏବଂ ଏହି କଳୀଯୁଗ ମଧ୍ୟ ଶ୍ରେଷ୍ଠ ଯୁଗ ଅଟେ । କାରଣ ଏହି ଯୁଗରେ ସମସ୍ତଙ୍କର ସମାନ ଅଧିକାର ଅଛି । ଜଣେ ବ୍ୟକ୍ତି ଯେ କୌଣସି ଜାତି, ବର୍ଣ୍ଣ, ଧର୍ମରେ ଜନ୍ମ ହେଉନା କାହିଁକି ସେ ନିଜର ତପବଳରେ ଯେକୌଣସି ଶ୍ରେଷ୍ଠ ଆସନର ଅଧିକାରୀ ହୋଇପାରୁଛି, ଯାହାକି ଅନ୍ୟ କୌଣସି ଯୁଗରେ ସମ୍ଭବ ନଥିଲା । ତେଣୁ ଭଗବାନ୍ ଶ୍ରୀକୃଷ୍ଣ ନିଜର ସଖା ଅର୍ଜୁନକୁ କହିଛନ୍ତି -

**ଚାରି ଯୁଗେ ପାର୍ଥ ହେ କଳୀଯୁଗ ସାର ।**
**ଚର୍ତୁବର୍ଗ୍ୟ ଫଳ ନର ଲଭନ୍ତି ଅଚୀର ।।**

ଭଗବାନ୍ ବିଷ୍ଣୁ ନିଜର ଲିଳାଖେଳାର ଚତୁର୍ଥ ଅବସ୍ଥା ଅର୍ଥାତ୍ ଶେଷ ଅଂଶଟିକୁ ଓଡ଼ିଶାର ପୁରୀ ଧାମରେ ଛାଡ଼ି ଯାଇଛନ୍ତି । ଏଥିରୁ ଅନୁମାନ କରି ହେଉଛି ଯେ - ଓଡ଼ିଶାବାସୀ ସରଳ, ନୀଷ୍କପଟ ଓ ନିଷ୍ପାପର ସେବକ ଅଟନ୍ତି । ମନୁଷ୍ୟ ଜୀବନରେ ଚତୁର୍ଥ ଅବସ୍ଥାଟି ଯେପରି ଅନ୍ୟର ସହାୟ ପାଇଁ ଅର୍ଥାତ୍ ପୁଅ, ଝିଅ, ବନ୍ଧୁ-ବାନ୍ଧବଙ୍କର ସହାୟ ଅପରିହାର୍ଯ୍ୟ ମନେକରେ, ଭଗବାନ୍ ବିଷ୍ଣୁ ମଧ୍ୟ ସେହିପରି ପ୍ରିୟ



ଓଡ଼ିଆ ଭକ୍ତଙ୍କର ଭକ୍ତିରେ ସନ୍ତୁଷ୍ଟ ହୋଇ ବଡ଼ ଭାଇ ବଳରାମ ଓ ସାନ ଭଉଣୀ ଶୁଭଦ୍ରାଙ୍କୁ ସାଥିରେ ନେଇ ପୁରୀ ଧାମରେ ବିଜେ କରିଛନ୍ତି ।

ଏହି ଧାମରେ ଭଗବାନ୍‌ଙ୍କୁ ଜଗତର ନାଥ ଜଗନ୍ନାଥ ବଡ଼ ଠାକୁର କୁହାଯାଏ, ତାଙ୍କର ଦାଣ୍ଡକୁ ବଡ଼ ଦାଣ୍ଡ କୁହାଯାଏ, ବଡ଼ ଦାଣ୍ଡର ବାଲିକୁ ସରଧାବାଲି କୁହାଯାଏ, ନଦୀକୁ ମହାନଦୀ କୁହାଯାଏ, ସାଗରକୁ ମହୋଦଧି କୁହାଯାଏ, ତାଙ୍କର ଦେଉଳକୁ ବଡ଼ ଦେଉଳ କୁହଯାଏ, ତାଙ୍କର ପ୍ରସାଦକୁ ମହା ପ୍ରସାଦ (ଅଭଡ଼ା) କୁହାଯାଏ ଏବଂ ଭକ୍ତଙ୍କର ଦୁଃଖ ଦୂର କରିବା ପାଇଁ ପ୍ରଭୁ ସଦାସର୍ବଦା ଦୁଇହାତ ବଢ଼ାଇ ରହିଥିବାରୁ ତାଙ୍କୁ ମହାବାହୁ କୁହାଯାଏ । ମହାବାହୁଙ୍କ ପାଖରେ ଧନୀ-ଗରିବ, ଉଚ-ନୀଚ କିଛି ବାଛ ବିଚାର ନଥାଏ । ଏହି କଥାକୁ ବୁଝାଇବା ପାଇଁ ହିଁ ଆମର ମହାରାଜା ପ୍ରଭୁଙ୍କ ସାମ୍ନାରେ ରଥଯାତ୍ରା ଦିନ ଝାଡୁ ମାରିବା କାମ କରନ୍ତି । ଏହାଦ୍ୱାରା ମହାରାଜାଙ୍କର ମହନୀୟତାର ପରିପ୍ରକାଶ ହୋଇଥାଏ ।

ଶ୍ରୀ ଜଗନ୍ନାଥଙ୍କୁ ଏହି କଳୀଯୁଗର ଚଳନ୍ତି ଦେବତା ବୋଲି କ୍ୱାହଯାଏ । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ୍, ଜୈନ, ବୌଦ୍ଧ ସର୍ବୋପରି ପ୍ରତ୍ୟେକ ଶ୍ରେଣୀର ବ୍ୟକ୍ତି ତା'ର ଜୀବନରେ ଅନ୍ତତଃ ଥରେ ଏହି ଚଳନ୍ତି

ଦେବତାଙ୍କୁ ବଡ଼ ଦାଣ୍ଡରେ ଦର୍ଶନ କରିବା ଉଚିତ । ଆତ୍ମା ୮୪ ଲକ୍ଷ ଯୋନୀ ଦେଇ ବାରମ୍ବାର ଜନ୍ମହୋଇ ଶେଷରେ ନିଜର ପୂଣ୍ୟକର୍ମ ବଳରେ ଏହି ଦୁର୍ଲଭ ମଣିଷ ଜନ୍ମ ଶରୀର ଲାଭ କରେ । ପୁରୀ ରଥ ଯାତ୍ରାରେ (ଗୁଣ୍ଡିଚା ଓ ବାହୁଡ଼ା) ତିନୋଟି ରଥର ମୋଟ୍ ଚକ ସଂଖ୍ୟା ୮୪ ଅଟେ । ଏହା ଜୀବର ଜୀବନ ଚକ୍ରକୁ ବୁଝାଏ । ତେଣୁ ମହାପୁରୁଷମାନେ କହିଛନ୍ତି ଗୁଣ୍ଡିଚା ଓ ବାହୁଡ଼ା ରଥଯାତ୍ରା ଦର୍ଶନ କଲେ ମନୁଷ୍ୟ ୮୪ ଲକ୍ଷ୍ୟ ଯୋନିରୁ ମୁକ୍ତି ପାଇ, ଏହି ଜନ୍ମରେ ସମସ୍ତ ସୁଖ ଭୋଗ କରିବା ସହିତ ଦେହାନ୍ତେ ପରମାତ୍ମାଙ୍କ ସାକ୍ଷାତ୍କାର ହୋଇଥାଏ । ଏହାର ଭିତିରିଆ ମର୍ମରେ ବଡ଼ ବଡ଼ ସାଧୁସନ୍ଥମାନେ ଗାଇଛନ୍ତି -

**ବଦ୍ରିକା ଯିବି କି କାରଣେ ।**

**ସକଳ ତୀର୍ଥ ତୋ ଚରଣେ ।**

ଭଗବାନ୍ ବିଷ୍ଣୁ ହରିଦ୍ୱାର ଗଙ୍ଗା ନଦୀରେ ସ୍ନାନ କରନ୍ତି, ପୁରୀ ବଡ଼ ଦେଉଳରେ ୫୬ ପଉଟି ଭୋଗ, ଖାଆନ୍ତି ଏବଂ ବଦ୍ରିକାରେ ଶୟନ କରନ୍ତି । ]



**ଓଁ ନମଃ ଜଗନ୍ନାଥାୟ-** ଜପି ଜପି ମନେମନେ ବଡ଼ ଦାଣ୍ଡର ସରଧାବାଲି ମୁଣ୍ଡରେ ଲଗାନ୍ତୁ । ତା'ପରେ ଜୟା-ବିଜୟା ଦ୍ୱାରପାଳଙ୍କୁ ନମସ୍କାର କରି ତୁଳସିମାଳା ଅର୍ପଣ କରନ୍ତୁ । ବାଇଶି ପାହାଞ୍ଚ ଚଢ଼ିବା ପରେ ଶ୍ରୀ ହନୁମାନ ଓ ଶ୍ରୀଗରୁଡ଼ଙ୍କୁ ନମସ୍କାର କରି ତୁଳସୀମାଳା ଅର୍ପଣ କରନ୍ତୁ । ତା'ପରେ ରତ୍ନ ସିଂହାସନ ପାଖକୁ ଯାଇ ଶ୍ରୀ ଜଗନ୍ନାଥଙ୍କୁ-ମାତା ଶୁଭଦ୍ରାଙ୍କୁ-ଶ୍ରୀ ବଳରାମଙ୍କୁ ସାଷ୍ଟାଙ୍ଗ ଦଣ୍ଡବତ୍ କରନ୍ତୁ ଓ ତୁଳସିମାଳା ଅର୍ପଣ କରନ୍ତୁ । ତା'ପରେ ଧ୍ୟାନ କରନ୍ତୁ -

**ଓଁ କ୍ଲୀଂ କୀଷ୍ଣାୟ ନମଃ । ଓଁ ନମୋ ଭଗବତେ ବାସୁଦେବାୟ ।**

**ଜୟ ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବ ତୁମେ । ଓଁ ନମୋ ରାଧେ କ୍ରୀଷ୍ଣାୟ ।**

**ଓଁ ନମୋ ମାତଃ ଶୁଭଦ୍ରେ । ଓଁ ନମଃ ବଳରାମାୟ ।**

## ଶ୍ରୀ ବୈଦ୍ୟନାଥ-ମାନଗୋବିନ୍ଦ-ଭୂବନେଶ୍ୱରଙ୍କୁ ଦର୍ଶନ





[ **ସୂଚନା:** ଓଡ଼ିଶା ରାଜ୍ୟ ଗଞ୍ଜାମ ଜିଲ୍ଲାର ଦିଗପହଣ୍ଡି ଠାରୁ ୫ କିଲୋମିଟର ଦୂରରେ ଥିବା ସାହାସ ପୁର ଗ୍ରାମର କେନ୍ଦ୍ର ସ୍ଥଳରେ ଶ୍ରୀ ବୈଦ୍ୟନାଥ-ମାନଗୋବିନ୍ଦ-ଭୂବନେଶ୍ୱର ତ୍ରୀମୂର୍ତ୍ତି ଯଥାକ୍ରମେ ମହେଶ୍ୱର-ବିଷ୍ଣୁ-ବ୍ରହ୍ମା, ସ୍ୱୟଂମ୍ଭୁ ଲିଙ୍ଗ ରୂପେ ପ୍ରକଟିତ ହୋଇ ଭକ୍ତଙ୍କର ଗୁହାରୀ ଶୁଣୁଛନ୍ତି ।

ସାହାସ ପୁର ଉପର ମୁଣ୍ଡରେ ଥିବା ବଡ଼ ରାଉଳ ପାହାଡ଼ରେ ଶହ ଶହ ବର୍ଷତଳେ ଗୋଟିଏ ବିଶାଳ ଗୁମ୍ଫା ଥିଲା । ସେହି ଗୁମ୍ଫା ଭିତରେ ତ୍ରେତୟା ଯୁଗରେ ଶ୍ରୀରାମଚନ୍ଦ୍ରଙ୍କ ବନବାସ ସମୟରେ ଭାଦ୍ରବ କୃଷ୍ଣ ଦ୍ୱାଦଶୀ ତିଥିରେ ସୀତା ମାତାଙ୍କ ଦ୍ୱାରା ସ୍ଥାପିତ ବଡ଼ ରାଉଳ ଠାକୁରାଣୀ ପୂଜା ପାଉଥିଲେ । ତେଣୁ ବଡ଼ ରାଉଳ ଠାକୁରାଣୀଙ୍କୁ ଆମେ ପୂଜା କରିବା ସମୟରେ ସୀତା ଠାକୁରାଣୀଙ୍କୁ ଧ୍ୟାନ କରୁଛୁ । କୌଣସି ବ୍ୟକ୍ତି ନିଜର ଅଭିଷ୍ଟ ସାଧନ କରିବା ପାଇଁ ସଂକଳ୍ପ କରି ଭାଦ୍ରବ କୃଷ୍ଣ ଦ୍ୱାଦଶୀ ତିଥିରେ ଅନ୍ନ ଭୋଗ ସହ ନବାତ ପଣା ମାତା ବଡ଼ ରାଉଳ ଠାକୁରାଣୀଙ୍କୁ ଅର୍ପଣ କରନ୍ତି, ତେବେ ସେହି ଭକ୍ତର ମନୋବାଞ୍ଛା ଅଚିରେ ସିଦ୍ଧିଲାଭ ହୁଏ । ସୂର୍ଯ୍ୟଙ୍କର ଆଲୋକ ଏବଂ ଶିବଙ୍କର ମନ୍ତ୍ରକୁ ରାଉଳ କୁହାଯାଏ । ସେହି ଯୁଗରେ ବଡ଼ ରାଉଳ ଠାକୁରାଣୀଙ୍କର ତିନିଜଣ ନିଷ୍ଠା ପରାୟଣ ଭକ୍ତ ଥିଲେ । ଥରେ ଏହି ଅଞ୍ଚଳରେ ବର୍ଷା ନ ହେବାରୁ

ମହାମାରୀ ଦୂର୍ଭିକ୍ଷ ପଡ଼ିଲା । ଜୀବଜଗତ ହାଅନ୍ନ କହି ବିକଳରେ ପ୍ରାଣ ଛାଡ଼ିଲେ । ବଡ଼ ରାଉଳ ଠାକୁରାଣୀ ନିଜର ସେହି ତିନିଜଣ ଭକ୍ତଙ୍କୁ ସ୍ୱପ୍ନରେ କହିଲେ ଇନ୍ଦ୍ରଦେବ ନିଷ୍ଠୁର ହୋଇଯାଇଛନ୍ତି । ତେଣୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କୁ ଆରାଧନା କରି ସନ୍ତୁଷ୍ଟ କଲେ ବର୍ଷା ହେବ । ସେହି ତିନି ଭକ୍ତ ମାତାଙ୍କ ଆଦେଶ କ୍ରମେ କଠୋର ତପସ୍ୟା କରି ତିନିଦେବଙ୍କୁ ସନ୍ତୁଷ୍ଟ କଲେ । ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ପ୍ରକଟ ହୋଇ ଆଶିର୍ବାଦ କଲେ ଫଳରେ ପ୍ରବଳ ବର୍ଷା ହେଲା । ତିନି ଭକ୍ତ ତ୍ରୀଦେବଙ୍କୁ ଜ୍ୟୋତିର୍ଲିଙ୍ଗ ରୂପେ ଏଠାରେ ଉଭା ହୋଇ ଭକ୍ତମାନଙ୍କର ଗୁହାରୀ ଶୁଣିବା ପାଇଁ ଅନୁରୋଧ କରିବାରୁ, ତ୍ରୀଦେବ ସେହି ତିନି ଭକ୍ତଙ୍କର ନାମାନୁସାରେ ଶ୍ରୀ ବୈଦ୍ୟନାଥ-ମାନଗୋବିନ୍ଦ-ଭୂବନେଶ୍ୱର ନାମରେ ସ୍ୱୟମ୍ଭୁ ଲିଙ୍ଗ ରୂପେ ଉଭା ହେଲେ । ଭକ୍ତମାନେ ତ୍ରୀମୂର୍ତ୍ତିଙ୍କ ସେବାରେ ଲାଗିଗଲେ । ଏହି ଅଞ୍ଚଳ ଫେରେ ସଶ୍ୟଶାମଳା ଓ ଜନଜୀବନରେ କୋଳାହଳ ହୋଇ ଉଠିଲା । ଏହି ଜ୍ୟୋତିର୍ଲିଙ୍ଗ, ତ୍ର୍ୟମ୍ବକେଶ୍ୱର ଜ୍ୟୋତିର୍ଲିଙ୍ଗ ସହିତ ସମସାମୟୀକ ଅଟେ । ଏହି ଜ୍ୟୋତିର୍ଲିଙ୍ଗଙ୍କୁ ଶ୍ରାବଣ ମାସର ସୋମବାର ଦିନଗୁଡ଼ିକରେ ଦୁଇ ନଦୀର ସଙ୍ଗମ ଘାଟର ଜଳ ଆଣି ଅଭିଷେକ କରି ସେହି ଦିନଟି ହବିଷାନ୍ନ ଭୋଜନ କରି ଶିବପାର୍ବତୀଙ୍କୁ ଧ୍ୟାନକରି ରହିଲେ ତା'ର ମନକାମନା ଅଚିରେ ସିଦ୍ଧି ହେବ ।



କାଳର କରାଳ ଗତିରେ ସବୁକିଛି ପରିବର୍ତ୍ତିତ ହୋଇଯାଏ । ଶହ ଶହ ବର୍ଷ ପରେ ଫେରେ ଏହି ଅଞ୍ଚଳ ଜନବିରଳ ହୋଇଗଲା ଏବଂ ଏହି କ୍ଷେତ୍ର ଗୁପ୍ତରେ ରହିଗଲା ।



ଆଜକୁ ପାଞ୍ଚଶହ ବର୍ଷ ତଳେ ଜଣେ ଗଉଡ଼ ଗାଇ ଚରାଉଥିବା ସମୟରେ ଦେଖିଲା ଗୋଟିଏ ଶୁକ୍ଳ ବର୍ଣ୍ଣର ଗାଇ ଏକ ନିଛାଟିଆ ପଥର ଆଡୁଆଳରେ ଠିଆ ହୋଇଛି ଏବଂ ତା'ର ପହ୍ନାର ଚିରଗୁଡ଼ିକରୁ କ୍ଷୀର ସ୍ୱତଃପତିତ ହେଉଛି ତଳେଥିବା ପଥର ଉପରେ । ଏକଥା ଚାରିଆଡ଼େ ପ୍ରଚାର ହୋଇଗଲା । ଲୋକେ ସେହି ସ୍ଥାନଟିକୁ ସଫାକରି ଦେଖିଲେ ତିନୋଟି ସ୍ୱୟମ୍ଭୁ ଜ୍ୟୋତିର୍ଲିଙ୍ଗ ଉଭା ହୋଇ ଚିକ୍ ଚିକ୍ ଦେଖାଯାଉଛି । ଏହି କଥା ସାନଖେମୁଣ୍ଡି ରାଜା ଶୁଣିବାକ୍ଷଣି ଛଣମେରୀ ଗାଁରୁ ତିନି ଜଣ ରାଉଳଙ୍କୁ । (ସିନ୍ଧୁସଗୋତ୍ରୀୟ) ଡକାଇ ସେବା କାର୍ଯ୍ୟରେ ଲଗାଇ ଦେଲେ ଓ ମନ୍ଦିର ପାଇଁ ବହୁତ ଜମି ଦାନ କଲେ । ସେହି ତିନିଜଣ ରାଉଳଙ୍କର ବଂଶଧରମାନେ ବର୍ତ୍ତମାନ ମନ୍ଦିର ଜମିକୁ ଚାଷକରି ଜୀବିକା ନିର୍ବାହ କରୁଛନ୍ତି ଓ ଶ୍ରୀ ବୈଦ୍ୟନାଥ-ମାନଗୋବିନ୍ଦ-ଭୂବନେଶ୍ୱର ପ୍ରଭୁଙ୍କର ସେବାୟତ କାର୍ଯ୍ୟ କରୁଛନ୍ତି । ]

**ଓଁ ନମଃ ଶିବାୟ । ଓ ନମଃ ବୈଦ୍ୟନାଥ ମାନଗୋବିନ୍ଦ ଭୂବନେଶ୍ୱରାୟ ।** ଏହି ମନ୍ତ୍ର ପଢ଼ି ପଢ଼ି ମନେମନେ ବୃଷଭ ଦର୍ଶନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ । ତା'ପରେ ତ୍ରୀଦେବଙ୍କ ଜ୍ୟୋତିର୍ଲିଙ୍ଗ ଦର୍ଶନ କରନ୍ତୁ ଓ ବିଲ୍ୱପତ୍ର ଅର୍ପଣ କରନ୍ତୁ ।

## ନିଜର ଇଷ୍ଟଦେବ ଓ ଇଷ୍ଟଦେବୀ ଦର୍ଶନ

ନିଜର ଘର ଭିତରେ ଐଶ୍ୟାନ୍ୟ କୋଣରେ ପୂଜା ପାଉଥିବା ଇଷ୍ଟଦେବଙ୍କୁ ଓ ଇଷ୍ଟ ଦେବୀଙ୍କୁ ଦର୍ଶନକରି ପ୍ରଣାମ କରନ୍ତୁ ଓ ପୁଷ୍ପ ଅର୍ପଣ କରନ୍ତୁ । ତା'ପରେ ନିଜର ପିତା-ମାତାଙ୍କୁ ପ୍ରଣାମ କରନ୍ତୁ । କାରଣ -

**ଜନନୀ ଜନ୍ମଭୂମି ଶ୍ଚ ।**
**ସ୍ୱର୍ଗାଦପି ଗରୀୟସି ॥**
**ପିତା ଧର୍ମ ପିତା ସ୍ୱର୍ଗ ।**
**ପିତରୀ ପରମେଶ୍ୱରଃ ॥**



ବର୍ତ୍ତମାନ ନିଜର ମନକୁ ବାହ୍ୟ ଜଗତରୁ ଫେରାଇ ଆଣି ନିଜର ଶରୀର ଭିତରେ ହୃଦୟରେ ଥିବା ଆତ୍ମଲିଙ୍ଗଙ୍କୁ ଧ୍ୟାନ କରନ୍ତୁ ।

**ଓଁ ନମଃ ଶିବାୟ । ଓଁ ନମୋ ମାତଃ ପାର୍ବତୀ**
**ଓଁ ମୃତ୍ୟୁଞ୍ଜୟ ମହାଦେବଂ**
**ତ୍ରାହିମାଂ ଶରଣାଗତମ୍ । ୧ ।**
**ଜନ୍ମମୃତ୍ୟୁ ଜରାବ୍ୟାଧି**
**ପିଡ଼ିତଂ କର୍ମ ବନ୍ଧନଃ । ୨ ।**
**ଓଁ ତ୍ରୟମ୍ବକଂ ଯଜାମହେ**
**ସୁଗନ୍ଧିଂ ପୃଷ୍ଟିବର୍ଦ୍ଧନମ୍ । ୧ ।**
**ଉର୍ବାରୁକ ମିବ ବନ୍ଧନାତ୍**
**ମୃତ୍ୟୋଃ ମୂକ୍ଷୀ ୟାମାମୃତାତ୍ । ୨ ।**

**ଓଁ ଖ୍ରୀଂ ଖ୍ରୀଂ ଖ୍ରୀଂ ଖ୍ରୀଂ ଫଟ୍ ।** (ତିନିଥର ପଢ଼ିବେ)

**ଓଁ ନମଃ ଆମ୍ରଲିଙ୍ଗାୟ ।** (ତିନିଥର ପଢ଼ିବେ)

**ଓଁ ନମଃ ଶିବାୟ । ଓଁ ନମୋ ମାତଃ ପାର୍ବତୀ ।** (ଶରୀର ଦୀର୍ଘଜୀବୀ ହେବାପାଇଁ ଏହି ମନ୍ତ୍ର ଜପ କରାଯାଏ ।) ବର୍ତ୍ତମାନ ହୃଦୟକୁ ଛୁଇଁ ଜପ ସମର୍ପଣ କରନ୍ତୁ । ଯଥା-

**ଗୁହ୍ୟାତିଗୁହ୍ୟ ଗୁପ୍ତସ୍ତଂ**

**ଗୃହାଣାସ୍ମତ୍ କୃତଂ ଜପଂ ।**

**ସିଦ୍ଧିର୍ଭବତୁ ମେଦେବୀ**

**ତ୍ୱତ୍ ପ୍ରସାଦାତ୍ ସୂରେଶ୍ୱରୀ ।**

**ଇତି ଶ୍ରୀ ଆମ୍ରଲିଙ୍ଗ ସାଧନ ସମାପ୍ତମ୍ ।**





**ତୃତୀୟ ଭାଗ**

# ରାଉଳ ମନ୍ତ୍ର

( ବୃତ୍ତିଗତ ପୂଜାରୀ/ମାଳିମାନଙ୍କ ପାଇଁ )

## ଶ୍ରୀ ଗଣପତି ବନ୍ଦନା

(ପ୍ରାତଃ କାଳରେ ଶଯ୍ୟା ଉପରେ ବସି, ଆଜି ଦିନଟି ନିର୍ବିଘ୍ନରେ ଯିବାପାଇଁ ପ୍ରଥମେ ଶ୍ରୀଗଣେଶଙ୍କୁ ଧ୍ୟାନକରି ତା'ପରେ ଗୁରୁ ବନ୍ଦନା କରନ୍ତୁ ।)



**ଓଁ ନମୋ ଗଣେଶ ବିଘ୍ନେଶ ଗିରିଜା ନନ୍ଦନ ପ୍ରଭୂ ।**
**ସର୍ବ ବିଘ୍ନ ବିନାଶାୟ ଗଣାଧି ପତୟେ ନମଃ ।।**
**ବକ୍ରତୁଣ୍ଡଂ ମହାକାୟଂ ସୂର୍ଯ୍ୟ କୋଟି ସମପ୍ରଭୂ ।**
**ନିର୍ବିଘ୍ନଂ କୁରୁମେ ଦେବ ସର୍ବକାର୍ଯ୍ୟେ ସୁସର୍ବଦା ।।**
ପ୍ରାତଃକାଳେ ଗୁରୁ ଦଣ୍ଡବତ୍ କୁର୍ଯ୍ୟାତ୍
**ଓଁ ଗୁରୁବ୍ରହ୍ମା ଗୁରୁବିଷ୍ଣୁ ଗୁରୁଦେବ ମହେଶ୍ୱର ।**
**ଗୁରୁ ସାକ୍ଷାତ୍ ପରମ୍ ବ୍ରହ୍ମଂ ତସ୍ମୈ ଶ୍ରୀ ଗୁରୁଭ୍ୟୋଂ ନମଃ ।।**



**ଅଜ୍ଞାନଂ ତିମିରା ଧ୍ୱଂଶା ଜ୍ଞାନିଜନଂ ଶିଳାକୟା ।**
**ଚକ୍ଷୁର୍ମିଳିତ ଯେନଂ ତସ୍ମୈ ଶ୍ରୀ ଗୁରୁଭ୍ୟୋଂ ନମଃ ।।**
**ଅଖଣ୍ଡ ମଣ୍ଡଳାକାରଂ ବ୍ୟାପ୍ତୟେନଂ ଚରାଚରଂ ।**
**ତପ୍ତଦଂ ଦର୍ଶିତଂ ଯେନଂ ତସ୍ମୈ ଶ୍ରୀ ଗୁରୁଭ୍ୟୋଂ ନମଃ ।।**

## ବହିଃର୍ଦେଶ ମନ୍ତ୍ର

**ଓଁ ଦେବ ଦାନବ ଗନ୍ଧର୍ବା ପିଚାଶ ରବ ରାକ୍ଷସ ।**
**ଇଦଂ ଭୂମି ପରିତେଜ୍ୟା ବହେର୍ଭୂମି କରୋମିହଂ ।।**

## ମୃର୍ତ୍ତିକା ଶୈଚ ମନ୍ତ୍ର

**ଓଁ ଏକଲିଙ୍ଗେ ଗୃଧେର୍ଣ୍ଣେବ ଦଶବାମେ କରେ ଶୌଚମ୍ ।**
**ଉଭୟ ସପ୍ତ ପାଦାଭ୍ୟଂ ନଖପାଦଂ ତ୍ରୀଭି ତ୍ରୀଭି ।।**

## ଦନ୍ତ ଧାପନା ମନ୍ତ୍ର

ଓଁ ଆୟୁର୍ବଳଂ ଯଶୋବିଚଂ ପ୍ରଜାପତି ବସୁନିଚମ୍ ।
ରୁଦ୍ରପ୍ରଜ୍ଞା ତୁମେ ଦନ୍ତୋ ତନୋର୍ଦ୍ଦେହି ବନସ୍ପତି ।।

## ପବିତ୍ର ସ୍ନାନ ମନ୍ତ୍ର

ଓଁ ନମୋ ମାତଃ ପାପନାଶିନୀ ଶିବଗଙ୍ଗେ ।
କାଶିଦ୍ୱାରେ ପ୍ରୟାଗେବା ଗଙ୍ଗା ସାଗର ସଙ୍ଗମେ ।
ସର୍ବତ୍ର ସୁଲଭ ଗଙ୍ଗା ତ୍ରୀସୂଷ୍ଟାନେ ସୁଦୁର୍ଲ୍ଲଭା ।।
ବିଷ୍ଣୁ ପାଦାଗୁ ସମ୍ଭୁତେ ଗଙ୍ଗେ ତ୍ରୀପଥ ଗାମିନୀ ।
ଧର୍ମ ଦ୍ରବିତି ବିଖ୍ୟାତେ ପାପମ୍ ମେ ହର ଜାହ୍ନବୀ ।।
ଓଁ ନମୋ ମାତଃ ପାପନାଶିନୀ ଶିବ ଗଙ୍ଗେ ।



## ଢ଼ାଳରେ ପାଣି ଭରିବା ମନ୍ତ୍ର

(ପୂଜାକାର୍ଯ୍ୟ ପାଇଁ ଯେଉଁ ଜଳ ଅଣାଯାଏ, ତାକୁ ଢ଼ାଳ କିମ୍ବା ମାଠିଆରେ ପୂରାଇବା ସମୟରେ ଅଭିମନ୍ତ୍ରିତ କରାଯାଏ ।)

ଓଁ ଗଙ୍ଗା ଗୋଦାବରୀ ରେବା ଜାହ୍ନବୀ ସୃତା ।
କାବେରୀ ଗୋମତୀ କ୍ରୀଷ୍ଣା ବ୍ରାହ୍ମୀ ବୈତରଣୀ ତଥା ।।
ଏତାନୀ ପୂଣ୍ୟ ତୀର୍ଥାନୀ ଅଭିଷେକାର୍ଥଂ ଭବନ୍ତିହ୍ୟ ।

## ଦ୍ୱାରପାଳ ମନ୍ତ୍ର

**ଓଁ ନନ୍ଦି ଭୃକୁଟି ଦ୍ୱାରପାଳ ବେନି, ଫେଡପେଡ଼ କବାଟ ପ୍ରଭୁଙ୍କୁ ସେବା କରିବା ବହନି । କର୍ପୂର ଚନ୍ଦନ ନୀର ବିବିଧ ପୁଷ୍ପହାର, ଧୂପଦୀପ ନୈବେଦ୍ୟ ଭୋଗ ହେ ତୁମର ।** ଶୁଣିଣ ଦ୍ୱାର ଯେ ଛାଡ଼ିଲେ ଦ୍ୱାରପାଳ, ଦେଉଳେ ପଶିଲେ ସେବକ ଦୁହ୍ଲାଳ ।

## ଘଣ୍ଟା ମନ୍ତ୍ର

ଓଁକାରଂ ପୂର୍ବ ମୁଦ୍ଧୃତ୍ୟମ୍, ଗଜଧ୍ୱନୀ ମତଃପରଂ ।
ମାତୁ ସ୍ୱାହେତୀ ମନ୍ତ୍ରେଣ, ଘଣ୍ଟାମନ୍ତ୍ରଂ ଉଦାହୃତଂ ॥

## ବୃଷଭ ଦର୍ଶନ ମନ୍ତ୍ର

ଓଁ ତ୍ରୀପାଦଂ ସପ୍ତହସ୍ତଞ୍ଚ ଚତ୍ୱାର ଶୃଙ୍ଗ ମେବଚ ଦ୍ୱେଶିର୍ଶ ଚ
ତ୍ରୀଧା ବଧୋ ମହାଦେବ ବୃଷଭ ମର୍ତ୍ତା ଆବିର୍ବେଶ ।

## ବୃଷଭ ସ୍ୱର୍ଶ ମନ୍ତ୍ର

ଓଁ ବୃଷଂ ଚଣ୍ଡଂ ବୃଷଂ ଦୃଷ୍ଟ୍ୱା ସୋମସୂତ୍ରଂ ପୁନଃ ବୃଷଂ ।
ବୃଷସ୍ୟ ବୃଷଣଂ ସୃଶ୍ୟା ଶଙ୍କରସ୍ୟା ବଲୋକନଂ ।
କୋଟି ଜନ୍ମାର୍ଜିତଂ ପାପଂ ତତ୍କ୍ଷଣାତ୍ ଦେବ ନଶ୍ୟତୀ ।



## ପ୍ରଭୂ ଶିବଙ୍କୁ ଧ୍ୟାନ ମନ୍ତ୍ର

ଓଁ ପାପହଂ ପାପକର୍ମ ହଂ ପାପାତ୍ମା ପାପସମ୍ଭବଃ
ତ୍ରାହିମାଂ ତ୍ୱଂ ବିରୁପାକ୍ଷଂ ସର୍ବ ପାପଂ ହରୋହରଃ
ଶ୍ରୀ ବିଶ୍ୱନାଥ କରୁଣାକର ଶୁଳପାଣେ
ଶମ୍ଭୁ ଗିରିଶ ଶିବ ଶଙ୍କର ଚନ୍ଦ୍ରମୌଳେ
ଶ୍ରୀ ନୀଳକଣ୍ଠ ମଦନାନ୍ତକ ବିଶ୍ୱମୁର୍ତ୍ତେ
ଗୌରିପତେ ମହି ନିଦ୍ଧେହି କୃପାକଟାକ୍ଷଂ
ବ୍ରହ୍ମା ଉବାଚ । ନମୋଃ ବାମଦେବାୟ ।
ହେ ଶମ୍ଭୁ ହେଈଶ ହେ ପଶୁପତି ହେ ଶିବ
ହେ ଶୁଳି ହେ ମହେଶ୍ୱର ହେ ଈଶ୍ୱର



ଶ୍ରୀ ବୈଦ୍ୟନାଥ ମାନଗୋବିନ୍ଦ ଭୁବନେଶ୍ୱର

ହେ ସର୍ବଇଶାନ ହେ ଶଙ୍କର ହେ ଚନ୍ଦ୍ରଶେଖର
ହେ ଭୂତେଷ୍ଣୁ ହେ ଖଣ୍ଡପରଶୁ ହେ ଗିରିଶ
ହେ ଗିରିଶମୁଢ଼ ହେ ମୃତ୍ୟୁଞ୍ଜୟ ହେ କୃଶିଦାସ
ହେ ପିନାକିନି ହେ ପ୍ରଥମାଧିପ ହେ ଉଗ୍ରକପର୍ଦ୍ଧି
ହେ ଶ୍ରୀଖଣ୍ଡ ହେ ସିତିଖଣ୍ଡ ହେ କପାଳଭୂତ
ହେ ବାମଦେବ ହେ ମହାଦେବ ହେ ବିରୂପାକ୍ଷ
ହେ ତ୍ରୀଲୋଚନ ହେ କୃଷାନୁରେତ ହେ ସର୍ବଜ୍ଞ
ହେ ଧୂର୍ଜଟି ହେ ନୀଳଲୋହିତ ହେ ହର
ହେ ସ୍ମର ହେ ହରଉର୍ଗୟ ହେ ତ୍ରୟମ୍ବକ
ହେ ତ୍ରୀପୁରାନ୍ତକ ହେ ଗଙ୍ଗାଧର ହେ ଅନ୍ଧକରିପୂ
ହେ କ୍ରତ୍‌ଧ୍ୱଂସିନି ହେ ବୃଷଧ୍ୱଜ ହେ ବ୍ୟୋମକେଶ



ହେ ଭବୋଭିମ ହେ ସ୍ଥାନରୁଦ୍ର ହେ ଉମାପତି
ଭୋ ପ୍ରଭୂ ଅହଂ ଜ୍ଞାନ ହିନଂ ଭକ୍ତି ହିନଂ
କ୍ରିୟା ହିନଂ କ୍ଷମସ୍ୱ ପ୍ରଭୂ ।

## ଆସନ ଶୁଦ୍ଧି

ଓଁ ଆସନ ମନ୍ତ୍ରସ୍ୟ ମେରୁପୃଷ୍ଠ ଋଷିଃ, 'ଶିତଳଂ ଛନ୍ଦଃ,
ଶ୍ରୀ କୁର୍ମ ଦେବତା, ପୃଥିବୀ ବୀଜଂ, ଆଧାର ଶକ୍ତି ଅନ୍ତରୀକ୍ଷଂ, ଆସନେ ବିନିଯୋଗଃ ।
ଓଁ ପୃଥ୍ୱୀତ୍ୱୟା ଧୃତା ଲୋକା, ଦେବୀତ୍ୱଂ ବିର୍ଷ୍ଣୁନା ଧୃତା ।

ତ୍ୱଂଞ୍ଚ ଧାରଇମାଂ ଦେବୀ ପବିତ୍ର ମାସନଂ କୁରୁ ॥

ଓଁ ଅପସର୍ପନ୍ତୁ ତେଭୂତା ଯେଭୂତା ଭୂମି ସଂସ୍ଥିତା, ଯେ ଭୂତା ବିଘ୍ନକର୍ତ୍ତାର, ତେ ନଶନ୍ତୁ ଶିବାଜ୍ଞାୟାଃ ।

ଓଁ ବାମେ ଗୁରୁ ଭ୍ୟୋ ନମଃ

ପରମ ଗୁରୁଭ୍ୟୋ ନମଃ

ପରାପର ଗୁରୁଭ୍ୟୋ ନମଃ

ଦକ୍ଷିଣେ ଗଣେଶାୟ ନମଃ

ଅଗ୍ରେ ଶିବାୟ ନମଃ । ସୂର୍ଯ୍ୟାୟ ନମଃ ।

ପଶ୍ଚିମେ ଦୁର୍ଗାୟୈ ନମଃ । ଲକ୍ଷ୍ମୀ ନମଃ ।

ମଧ୍ୟେ ପରମାତ୍ମନେ ନମଃ ।

ତାଳତ୍ରୟଂ ଦିଗ୍ ବନ୍ଦନଂ କୁର୍ଯ୍ୟାତ୍ ।

ଓଁ ଇନ୍ଦ୍ରାୟ ନମଃ । ଓଁ ଅଗ୍ନେୟ ନମଃ ।

ଓଁ ଯମାୟ ନମଃ । ଓଁ ନୈରୁତାୟ ନମଃ ।



ଓଁ ବରୁଣାୟ ନମଃ । ଓଁ ବାୟବେ ନମଃ ।

ଓଁ କୁବେରାୟ ନମଃ । ଓଁ ଇଶାନାୟ ନମଃ ।

ଓଁ ଅନନ୍ତାୟ ନମଃ । ଓଁ ବ୍ରହ୍ମଣେ ନମଃ ।

ଓଁ ପରମାତ୍ମନେ ନମଃ । ଇତି ଆସନ ଶୁଦ୍ଧିଃ ।

## ଭୂତ ଶୁଦ୍ଧି

ଓଁ ଅଗ୍ନି ପ୍ରକାରଂ ଚିନ୍ତୟିତ୍ୱା ଭୂତଶୁଦ୍ଧିଂ କୁର୍ଯ୍ୟାତ୍ ।

ଓଁ କରକଚ୍ଛ ପିକାବଧା, ହୃଦୟେ ତାରକାକାରଂ

ଜ୍ୟୋତିର୍ମୟଂ ଧାତ୍ୱା, ସୁଷୁମ୍ଣା ମାର୍ଗେଣ ନିତ୍ୱା

**ଦ୍ୱାଦଶାନ୍ତେ ଚନ୍ଦ୍ରମଣ୍ଡଳ ସ୍ଥାପଏତ୍, ସୋସଣାଦିଙ୍କ କୁର୍ଯ୍ୟାତ୍ ।**

**ହଂସଃ ଇତି ମନ୍ତ୍ରେଣ ଆତ୍ମାନାଂ ସ୍ଥାପଏତ୍, ଇଷ୍ଟ ଦେବଂ ଧାୟେତ୍ ।**

(ଆସନରେ ନିଶ୍ଚଳଭାବେ ବସି ଇଷ୍ଟ ମନ୍ତ୍ର - **''ଓଁ ନମଃ ଶିବାୟ''**କୁ ପୁରକ, କୁମ୍ଭକ ଓ ରେଚକ କରିବେ, ଅନ୍ତତଃ ପାଞ୍ଚ ମିନିଟ୍ ପର୍ଯ୍ୟନ୍ତ । ଏହି ସମୟରେ ଇଷ୍ଟଦେବ ଶିବ-ପାର୍ବତୀଙ୍କୁ ମାନସ ପଟରେ ଚିନ୍ତା କରିବେ ।)

***ଧ୍ୟାନ:-*** **ପୁଲ୍ଲାର ବିନ୍ଦୁ ବଦନଂ, ପିତ ନିର୍ମଳ ବାସିତଂ । ପଙ୍କୋଯାସନ ମଧ୍ୟସ୍ଥଂ, ଶୁଦ୍ଧ ଜମ୍ବୁନାଯ ପ୍ରଭୋ । କେୟର କଟକୋପେତଂ, ହାର କୁଣ୍ଡଳ ମଣ୍ଡିତଂ । ଶଙ୍ଖଚକ୍ର ତସ୍ମିଦଂ, ମୁକୁଟୋଜ୍ୱଳ ଭୂଷିତଂ । ସଞ୍ଚିତ ଜିବମାତ୍ମାନଂ, ତସ ହୃଦିସ୍ଥ, ବିଚିନ୍ତୟେତ୍ ।**

**ସୋହଂ ମଣ୍ଟିତ ଭେଦନଂ, ଚିନ୍ତୟେ ପରମେଶ୍ୱର । ସୋହଂ ମଣ୍ଟିତେ ଭୂତଶୁଦ୍ଧିଂ ସମାପତଃ ।**



## କରନ୍ୟାସ (କର ଶୁଦ୍ଧି)

(ଦୁଇ ହାତରେ କିଛି ଚନ୍ଦନ ଲଗାଇବା ପରେ ନିମ୍ନ ମନ୍ତ୍ର ଉଚ୍ଚାରଣ କରନ୍ତୁ ଏବଂ ବୃଦ୍ଧାଙ୍ଗୁଳି ଦ୍ୱାରା ସେହି ସେହି ଆଙ୍ଗୁଠିକୁ ଛୁଅନ୍ତୁ ।)




**ଓଁ ଅଂ ଆଂ ଅଙ୍ଗୁଷ୍ଠାଭ୍ୟାଂ ନମଃ ।**

**ଓଁ ଇଂ ଈଂ ତର୍ଯ୍ୟନୀଭ୍ୟଂ ସ୍ୱାହା ।**

**ଓଁ ଉଁ ଊଂ ଶିଖାୟ (ମଧ୍ୟମା) ବଷଟ୍ ।**

**ଓଁ ଏଂ ଐଂ ଅନାମିକାଭ୍ୟଂ ହୁଂ ।**

**ଓଁ ଓଂ ଔଂ କନିଷ୍ଠାଭ୍ୟଂ ବଷଟ୍ ।**

**ଓଁ ଅଂ ଅଃ କରତଳ କରପୃଷ୍ଠାଭ୍ୟଂ ଅସ୍ତ୍ରାୟ ଫଟ୍ ।**

## ଅଙ୍ଗନ୍ୟାସ (ଅଙ୍ଗ ସୁଦ୍ଧି)

(ନିଜର ଦେହକୁ ପୂଜା କରିବ, ଗୋଟିଏ ଫୁଲକୁ ଧରି ନିମ୍ନ ମନ୍ତ୍ର ଉଚ୍ଚାରଣ କରନ୍ତୁ ଏବଂ ସେହି ସେହି ଅଙ୍ଗକୁ ଫୁଲରେ ସ୍ପର୍ଶ କରନ୍ତୁ ।)




ଓଁ ଅଂ ଆଂ ହୃଦୟାୟ ନମଃ ।
ଓଁ ଇଂ ଇଂ ଶିରୋଶି ସ୍ୱାହା ।
ଓଁ ଉଂ ଉଂ ଶିଖାୟ ବଷଟ୍ ।
ଓଁ ଏ ଐଂ କବଚାୟ ହୁଂ ।
ଓଁ ଓଂ ଔଂ ନେତ୍ରାଭ୍ୟଂ ବଷଟ୍ ।
ଓଁ ଅଂ ଅଃ କରତଳ କରପୃଷ୍ଠାଭ୍ୟଂ ଅସ୍ତ୍ରାୟ ଫଟ୍ ।

*ଧ୍ୟାନ-* ବନ୍ଦେ ଦେବ ଉମାପତିଂ ସୁରଗୁରୁଂ, ବନ୍ଦେ ଜଗତକାରଣଂ
ବନ୍ଦେ ପନ୍ନଗଭୁଷଣଂ ମୃଗଧରଂ, ବନ୍ଦେ ପଶୁନା ପତିଂ ।



ବନ୍ଦେ ସୂର୍ଯ୍ୟ ଶଶାଙ୍କ ବହ୍ନି ନୟନଂ, ବନ୍ଦେ ମୁକୁନ୍ଦ ପ୍ରିୟଂ
ବନ୍ଦେ ଭକ୍ତ ଜନା ଶ୍ରୟଂଚ ବରଦଂ, ବନ୍ଦେ ଶିବଂ ଶଙ୍କରମ୍ ।
ଇତି ଶ୍ରୀ ପ୍ରଣବ ବିଧି ସମାପତଃ ।

## ଅନ୍ତ ମାତୃକାନ୍ୟାସ



ଶ୍ରୀ ବୈଦ୍ୟନାଥ ମାନଗୋବିନ୍ଦ
ଭୁବନେଶ୍ୱର ଜ୍ୟୋତିର୍ଲିଙ୍ଗ

(ନିଜ ଶରୀରର ଷଟ୍ ଚକ୍ରକୁ ଧ୍ୟାନ କରିବେ ।)

**ଓଁ ଆଧାର ପଦ୍ମେ, ବଂ, ଶଂ, ସଂ, ଷଂ ନମଃ ।**

**ଓଁ ଲଲାଟ ପଦ୍ମେ, ହଂ, କ୍ଷଂ ନମଃ ।**

**ଓଁ କଣ୍ଠ ପଦ୍ମେ, ଅଂ, ଆଂ, ଇଂ, ଈଂ, ଉଂ, ଋଂ, ୠଂ, ଏଂ, ଐଂ, ଓଂ, ଔଂ, ଅଂ, ଅଃ ନମଃ ।**

**ଓଁ ହୃଦୟପଦ୍ମେ, କଂ, ଖଂ, ଗଂ, ଘଂ, ଙଂ, ଚଂ, ଛଂ, ଜଂ, ଝଂ, ଞଂ, ଟଂ, ଠଂ ନମଃ ।**

**ଓଁ ନାଭିପଦ୍ମେ, ଡଂ, ଢ଼ଂ, ପମ୍, ଫମ୍ ନମଃ ।**

**ଓଁ ଲିଙ୍ଗପଦ୍ମେ, ବଂ, ଭଂ, ମଂ, ଯଂ, ରଂ, ଲଂ ନମଃ, ଇତି ଅନ୍ତଃ ମାତୃକାନ୍ୟାସ ସମାପତଃ ।**

## ବ୍ରହ୍ମ କପାଳ ମନ୍ତ୍ର

**ଆରମ୍ଭ ଦକ୍ଷ ଜଜ୍ଞଶ୍ଚ । ଅଭିମାନଂ କୃତଂ ଶିବଂ ।।**

**ଶ୍ରୀହସ୍ତେନଂ ଶିରଛିତ୍ୱା । ହବିକୁଣ୍ଡେ ଚ ଦହନଂ ।।**



**ବ୍ରହ୍ମହତ୍ୟା କୃତଂଶ୍ଚୈବଂ । ଶିବଂ ବ୍ରହ୍ମ କପୋଳକଂ ।**

**ଅହଂ ଅର୍ଚ୍ଚନଂ କୃତ୍ୱା । ବ୍ରହ୍ମଭୂତଂ ଦୂରୀଭୂତଃ ।।**

## ଜଳ ଅଭିଷେକ ମନ୍ତ୍ର

**ଓଁ ଗଙ୍ଗା ଗୋଦାବରୀ ରେବା ଜାହ୍ନବୀ ସୃତା**

**କାବେରୀ ଗୋମତୀ କୃଷ୍ଣା ବ୍ରାହ୍ମୀ ବୈତରଣୀ ତଥା**

**ଏତାନୀ ପୂଣ୍ୟ ତୀର୍ଥାନୀ ଅଭିଷେକାର୍ଥଂ ଭବନ୍ତିହ୍ୟ ।**

**ଗଙ୍ଗାତରଙ୍ଗ କମନୀୟ ଜଟାକଳାପମ୍,**

**ଗୌରୀ ନିରନ୍ତର ବିଭୂଷିତଂ ବାମଭାଗଂ,**

**ନାରାୟଣ ପ୍ରିୟ ମନଙ୍ଗ ମଦାର୍ପ ହାରଂ,**

**ବାରଣସୀ ପୁରପତିଂ ଭଜ ବିଶ୍ୱନାଥମ୍ । ୧ ।**



ବାଚା ମଗୋଚର ମଶେଷ ଗୁଣ ସ୍ୱରୂପମ୍
ବାଗୀଶ ବିଷ୍ଣୁସୁର ସେବିତ ପାଦପିଠମ୍
ବାମେନ ବିଗ୍ରହ ବରଣ କଲତ୍ରବନ୍ତଂ
ବାରାଣସୀ ପୁରପତିଂ ଭଜ ବିଶ୍ୱନାଥଂ । ୨ ।
ଶୀତାଂଶୁ ଶୋଭିତ କିରୀଟ ବିରାଜମାନଂ
ଭାଲେକ୍ଷଣାର୍ନଲ ବିଭୂଷିତ ପଞ୍ଚବାଣଂ
ନାଗାଧିପା ରଚିତ ଭାସ୍କର କର୍ଣ୍ଣପୁରଂ
ବାରଣସୀ ପୁରପତିଂ ଭଜ ବିଶ୍ୱନାଥଂ । ୩ ।
ଭୂତାଧିପ ଭୂଜଙ୍ଗ ପୁଙ୍ଗ ବିଭୂଷିଣଙ୍ଗମ୍
ବ୍ୟାଘ୍ରା ଜିନାମ୍ବରଂ ଧରଂ ଜଟିଳଂ ତ୍ରିନେତ୍ରଂ



ପାଶାଙ୍କୁଶା ଭବଭୟ ହରଂ ପ୍ରଦଶୂଳ ପାଣିଂ
ବାରାଣସୀ ପୁରପତିଂ ଭଜ ବିଶ୍ୱନାଥଂ । ୪ ।
ପଞ୍ଚାନନ ଦୁରିତମତ୍ତ ମତାଙ୍ଗର୍ଦ୍ଧାନାଂ
ନାଗାନ୍ତକଂ ଦନୁଜ ପୁଙ୍ଗବ ପନ୍ନାଗାନଂ
ଦାବାନଳଂ ମରଣଶୋକ ଭୟାଟ୍‌ବିନାଂ
ବାରଣସୀ ପୁରପତିଂ ଭଜ ବିଶ୍ୱନାଥଂ । ୫ ।
ତେଜୋମୟଂ ସଗୁଣ ନିର୍ଗୁଣମଦ୍ୱିତୀୟଂ
ଆନନ୍ଦକନ୍ଦମ ପରାଜିତଂ ପ୍ରମେୟଂ
ନାଗାତ୍ମକଂ କୁଳନିଶୁଳମାତ୍ୟ ରୁପମ୍
ବାରାଣସୀ ପୁରପତିଂ ଭଜ ବିଶ୍ୱନାଥଂ । ୬ ।

ରାଗାଦି ଦୋଷରହିତଂ ସୁଜନାନୁରାଗଂ
ବୈରାଗ୍ୟ ଶାନ୍ତିନିଳୟଂ ଗିରିଜା ସହାୟଂ
ମାଧୂର୍ଯ୍ୟ ଧୈର୍ଯ୍ୟସୁଭଗଂ ଗରଳାଭିରାମଂ
ବାରାଣସୀ ପୁରପତିଂ ଭଜ ବିଶ୍ୱନାଥଂ । ୭ ।
ଆଶାଂ ବିହାୟ ପରିହୃତ୍ୟ ପରସ୍ୟ ନିନ୍ଦାଂ
ପାପେ ରଚିତଂ ଚ ସୁନିର୍ବାର୍ଯ୍ୟ ମନଃ ସମାଧୌ
ଆଧାର ହୃଦକମଳ ମଧ ଗତଂ ପରେଶଂ
ବାରାଣସୀ ପୁରପତିଂ ଭଜ ବିଶ୍ୱନାଥଂ । ୮।
ଶ୍ରୀ ବିଶ୍ୱନାଥ କରୁଣାକର ଶୁଳପାଣେ
ଶମ୍ଭୋ ଗିରିଶ ଶିବଶଙ୍କର ଚନ୍ଦ୍ରମୌଳେ



ଶ୍ରୀ ନୀଳକଣ୍ଠ ମଦନାନ୍ତକ ବିଶ୍ୱମୁର୍ତ୍ତେ
ଗୌରୀପତେ ମୟନିଧେହି କୃପା କଟାକ୍ଷମ୍
ଇତି ଶ୍ରୀ ମହର୍ଷି ବ୍ୟାସ ପ୍ରଣଦିତ ବିଶ୍ୱନାଥାଷ୍ଟକଂ ସମ୍ପୁର୍ଣ୍ଣଂମ୍ ।

## ମେରୁଗର୍ଭ ମନ୍ତ୍ର

ଓଁ ମେରୁ ଗର୍ଭରୁ ଗଙ୍ଗା ହୋଇଲେ ଉତପତି,
ବିଷ୍ଣୁପଦ ନାମ ଜଗେତ ବିକ୍ଷାତି,
ଐରାବତ ଗଜଦନ୍ତ ଘାତଘେନି,
ପାତାଳ ଭେଦି ଗଙ୍ଗା, ବହିଲେ ମନ୍ଦାକିନି ।
ଦେବରଷିମାନେ ତପକଲେ ଯହୁଁ,

ସୁରନଦୀ ନାମ ବୋଲାଇଲେ ତହୁଁ,
ତ୍ରେତୟା ଯୁଗରେ ରଘୁନାଥ ଘେନିଣ ଭାଗୀରଥି,
ତୁମ୍ଭର ଛାମୁକୁ ଅଇଲେ ଦାଶରଥି,
ଗରଳ ଜ୍ୱାଳାରେ ପ୍ରଭୂ ହୋଇଥିଲେ ଅଚେତନ,
ବନେ ଅଭିଷେକ କଲେ କୌଶଲ୍ୟା ନନ୍ଦନ,
ସନ୍ତୋଷ ହୋଇ ପ୍ରଭୂ ବୋଇଲ ମାଗ ବର,
କିବର ମାଗିବି ବୋଇଲେ ଧନୁର୍ଦ୍ଧର,
ମୋ ନାଭି କମଳରୁ ବ୍ରହ୍ମା ଉତପତି,
ଚଉରାଶି ଖାନିକି କଲେକ ପ୍ରଜାପତି ।
ସେ ଯେଉଁ ରୂପେ ତବ ଶ୍ରୀ ଚରଣେ କିଙ୍କର,
ତହିଁକି ଅନୁରୂପେ ଦେବାକୁ ହେଉ ବର ।



ହେଉବୋଲି ହରଷେ ଆଜ୍ଞା ଦେଲେ ଭବ,
ମେଲାଣି ମାଗିଣ ଯେ ଚଳିଲେ ବାସୁଦେବ ।
ହର ହର ମହାଦେବ, ମଣିମା ମଣିମା ବାମଦେବ,
ସଂସାର ସୁଖିକର, ଧର୍ମ ପ୍ରାପତ କର, ଗାଇକି କ୍ଷୀରବତୀ କର,
ନାରୀକି ପୁତ୍ରବତୀ କର, ଅପୁତ୍ରିକି ପୁତ୍ର ପ୍ରାପ୍ତ ହେଉ,
ଖୋଡିଆ କାମଦେବଙ୍କର, ମହାରାଜାଙ୍କର,
ପାପାଧି ପାପଗ୍ରହମାନ କ୍ଷୟ କରିବାକୁ ଆଜ୍ଞା ହେଉ,
ଯଜମାନଙ୍କର ମନବାଞ୍ଛା ସିଦ୍ଧ କରିବାକୁ ଆଜ୍ଞା ହେଉ ।
ଆହେ ପରମ କାରଣ ପରମ ଯୋଗି
ମଣିମା ମଣିମା ବାମଦେବ ।
ଓଁ ନମଃ ଶିବାୟ ।

## ଶ୍ରୀ ଅଙ୍ଗ ପୋଛା ମନ୍ତ୍ର

ଓଁ ଶୁଦ୍ଧଂ ଶୁଚେଳକଂ ଶ୍ଚୈବ ।   ଶ୍ରୀ ଅଙ୍ଗମ୍ ମାର୍ଜନଂ ଭବେତ୍ ॥
ଯଜମାନଂ ଫଳ ପ୍ରାପ୍ତି ।   ଆରୋଗ୍ୟ ପୁତ୍ର ପୌତ୍ରିକଂ ॥
ଓଁ ନମଃ ଶିବାୟ ।

## ଆଭରଣ ମନ୍ତ୍ର

ଓଁ ଗୃହାଣଂ ସର୍ବାଭରଣଂ ।  ହୈମ ରଜତ ନିର୍ମିତଂ ॥
ନାନାରତ୍ନ ସମକୀର୍ଣ୍ଣମ୍ ।  ସୁନ୍ଦରଂ ସୁମନୋହରଂ ॥
ଓଁ ନମଃ ଶିବାୟ ।



## ଚନ୍ଦନ ମନ୍ତ୍ର

ଓଁ ପରମାନନ୍ଦ ଶୌରଭ୍ୟଂ ପରିପୂର୍ଣ୍ଣ ଦିଗନ୍ତରଂ
ଗୃହାଣଂ ପରମ ଗନ୍ଧଂ କୃପୟା ପରମେଶ୍ୱରଂ ।
ଓଁ ନମଃ ଶିବାୟ ।

## ପୁଷ୍ପ ମନ୍ତ୍ର

ଓଁ ତୁରିବନ ସମ୍ଭୁତଂ ନାନାଗୁଣ ମନୋହର । ଆନନ୍ଦଂ ସୌରଭ ପୁଷ୍ପଂ ଗୃହ୍ୟତାମିଦମୁତ୍ତମଂ ॥
ଓଁ ନମଃ ଶିବାୟ ।
[ ପ୍ରଭୂ ଶିବଙ୍କର ପ୍ରିୟ ପୁଷ୍ପ - ଚମ୍ପକ, ଧୁସ୍ତର, (ଦୁଦୁରା),
ଅର୍କଦୟା (ଅରଖ), କଦମ୍ବ, ମନ୍ଦାର, କନ୍ୟର,
ପଦ୍ମ, ପାଟଳୀ, ଆଛୁ ଫୁଲ ଇତ୍ୟାଦି । ]

## ବେଲପତ୍ର ଚଢ଼ା ମନ୍ତ୍ର

ଓଁ ଅଖଣ୍ଡଂ ବେଲ ପତ୍ରଂଞ୍ଚ ସବୁଜଂ କୋମଳଂ ତଥା
ଅଗ୍ରେ ଲିପିତ ଚନ୍ଦନଂ ଗୃହ୍ୟତାମିଦଂ ମୁତ୍ତମଂ ।
ଓଁ ନମଃ ଶିବାୟ ।

## ତୁଳସି ଚଢ଼ା ମନ୍ତ୍ର

ଓଁ ତୁଳସି ହେମ ରୁପେଣଂ ରତ୍ନ ରୁପେଣ ମଞ୍ଜୁରି
ଶାଖା ଦେବ ରୁପେଣଂ ରୁଚିତଂ ପୁରଷୋତ୍ତମଃ ।
ଓଁ ନମଃ ଶିବାୟ ।



## ଧୂପ ମନ୍ତ୍ର

ଓଁ ବନସ୍ପତି ରସୋ ଦିବ୍ୟୋ ଗନ୍ଧାଢ଼୍ୟଃ ସୁମନୋହରଃ
ଆଘ୍ରେୟ ସର୍ବ ଦେବାନାଂ ଧୂପୋୟଂ ପ୍ରତିଗୃହ୍ୟାଣାଂ
ଓଁ ନମଃ ଶିବାୟ ।

## ଦୀପ ମନ୍ତ୍ର

ଓଁ ସୁପ୍ରକାଶୋ ମହାଜ୍ୟୋତିଂ ସର୍ବତ୍ର ତିମିରା ପହଃ
ସର୍ବାହ୍ୟାଭ୍ୟନ୍ତର ଜ୍ୟୋତି ଦୀପୟଃ ପ୍ରତିଗୃହ୍ୟାଣାଂ ।
ଓଁ ନମଃ ଶିବାୟ ।

## ବାଲଭୋଗ ପୂଜା

[ ବର୍ତ୍ତମାନ ମନ୍ଦିର ଚାରିପଟେ ଥିବା ପାର୍ଶ୍ୱ ଦେବାଦେବୀ ଗଣ ଯଥା- ବୃଷଭ, ନନ୍ଦି, ଭୃକୁଟି, ଗଣେଶ, କାର୍ତ୍ତିକେୟ ଓ ପାର୍ବତୀଙ୍କୁ ସ୍ନାନ ଏବଂ ଚନ୍ଦନ, ପୁଷ୍ପ, ବିଲ୍ୱ ଅର୍ପଣ କରନ୍ତୁ । ଏହାପରେ ଶିବଲିଙ୍ଗ ସମ୍ମୁଖରେ ବାଲଭୋଗ (ଅର୍ଥାତ୍-ଉଖୁଡ଼ା, କଦଳୀ, ଆମ୍ବ ଇତ୍ୟାଦି)କୁ ରଖନ୍ତୁ ଏବଂ ନିଜେ ଆସନରେ ବସନ୍ତୁ । ନିମ୍ନଲିଖିତ ମନ୍ତ୍ର କରନ୍ତୁ ।]

(୧) **କରନ୍ୟାସ କରନ୍ତୁ :-** (ପୂର୍ବବତ୍)

(୨) **ଅଙ୍ଗନ୍ୟାସ କରନ୍ତୁ :-** (ପୂର୍ବବତ୍)

(୩) **ଧ୍ୟାନ କରନ୍ତୁ :-**

**ଓଁକାରଂ ବିନ୍ଦୁସ ଯୁକ୍ତଂ ନିତ୍ୟଂ ଧ୍ୟାୟନ୍ତି ଯୋଗିନଃ ।**
**କାମଦଂ ମୋକ୍ଷଦଂ ଚୈବ ଓଁକାରାୟ ନମୋନମଃ ।**



**ନମନ୍ତି ଋଷୟୋଦେବା ନମନ୍ତି ଅପସରାଗଣାଃ ।**
**ନରା ନମନ୍ତି ଦେବେଶଂ ନ କାରାୟ ନମୋନମଃ ।**
**ମହାଦେବଂ ମହାତ୍ମାନଂ ମହାଯୋଗୀ ମହେଶ୍ୱରଂ**
**ସର୍ବ ପାପମ୍ ହରେଦେବଂ ମକାରାୟ ନମୋନମଃ ।**
**ଶିବଂ ଶାନ୍ତଂ ମହାଦେବଂ ଲୋକାନୁଗ୍ରହକାରକଂ**
**ଶିବଂ ମେକଂ ପରଂବ୍ରହ୍ମଂ ଶିକାରାୟ ନମୋନମଃ ।**
**ବାହନଂ ବୃଷଭ ଯସ୍ୟ ବାସୁକି କଣ୍ଠ ଭୂଷଣଂ**
**ବାମେ ଶକ୍ତିଧରଂ ଦେବଂ ବାକାରାୟ ନମୋନମଃ ।**
**ଯତ୍ରତତ୍ର ସ୍ଥିତଦେବ ଜଗଦ୍ବ୍ୟାପି ମହେଶ୍ୱରଃ**
**ଯୋଗୁରୁ ସର୍ବଦେବାନାଂ ଯକାରାୟ ନମୋନମଃ ।**
**ପଞ୍ଚାକ୍ଷର ମିଦଂସ୍ତୋତ୍ରଂ ଯହ ପଠେତ୍ ଶିବସନିଧୌ**

**ବାଞ୍ଛିତାର୍ଥମ୍ ସହ ପ୍ରାପ୍ତିର୍ ଭବତି ଅନ୍ତିମେ ଶିବଲୋକଂ ସଗଛତି ।**

**ଇତି ଶ୍ରୀ ଶିବପଞ୍ଚନାମାନି ସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।**

(୪) **ନୈବେଦ୍ୟ ମନ୍ତ୍ର :-**

**ବିକ୍ଷଣଂ -** ଏହାକହି ବିଲ୍ୱପତ୍ରଦ୍ୱାରା ଭୋଗ ଉପରେ ପାଣି ଛିଞ୍ଚିବେ ।

**ପ୍ରୋକ୍ଷଣଂ -** ଏହା କହି ଫେରେ ବିଲ୍ୱପତ୍ରଦ୍ୱାରା ଭୋଗ ଉପରେ ପାଣି ଛିଞ୍ଚିବେ ।

**ଚୈବ ତାଡ଼ନଂ -** ଏହା କହି ଗୋଟିଏ ଥର ତାଳି ମାରିବେ ।

**ଗୁଣ୍ଠନ -** ଏହା କହି ଦୁଇହାତ ମୁଠା କରିବେ ଯେପରି ବୃଧାଙ୍ଗୁଳି ସିଧା ରହିବ ।

**ଧେନୁମୁଦ୍ରା ଅମୃତ୍‌କୃତ୍ -** ଧେନୁମୁଦ୍ରା ଦେଖାଇବେ ।

**ମହାମୁଦ୍ରା ପରିବି କରଣାମି -** ମହାମୁଦ୍ରା ଦେଖାଇବେ ।

**ଓଁ ନମଃ ଶିବାୟ, ଇଦଂ ନୈବେଦ୍ୟଂ ନିବେଦୟାମି ସ୍ୱାହା ।**

**ଓଁ ଅମୃତୋ, ପସ୍ତରଣମସି ସ୍ୱାହା -** ଏହା କହି ଜଳଗଣ୍ଡୁଷ ପ୍ରଦାନ କରିବେ ।



ତା'ପରେ ପ୍ରାଣାଦି ପଞ୍ଚମୁଦ୍ରା ଦର୍ଶନ କରାଇବେ ଯଥା:- **ଓଁ ପ୍ରାଣାୟ ସ୍ୱାହା, ଓଁ ଅପାନାୟ ସ୍ୱାହା, ଓଁ ବ୍ୟାନାୟ ସ୍ୱାହା, ଓଁ ଉଦାନାୟ ସ୍ୱାହା, ଓଁ ସମାନାୟ ସ୍ୱାହା । ଓଁ ନମଃ ଶିବାୟ ।**

ତା'ପରେ ବାହାରକୁ ଆସି କବାଟ (ଦୁଆର) ବନ୍ଦ କରିବେ ଏବଂ ଏକ ମିନିଟ୍ ପର୍ଯ୍ୟନ୍ତ **ଓଁ ନମଃ ଶିବାୟ** ମନ୍ତ୍ର ଜପି ଜପି ଘଣ୍ଟି କିମ୍ବା ବାଦ୍ୟ ବଜାଇବେ । ଏକ ମିନିଟ୍ ପରେ ତାଳିମାରି ଦୁଆର ଖୋଲିବେ ।

ତା'ପରେ ବେଲପତ୍ର ଦ୍ୱାରା ଭୋଗ ଉପରେ ଜଳ ଛିଞ୍ଚି ମନ୍ତ୍ର ପଢ଼ିବେ -

**ଆଚମନାନ୍ତେ ଓଁ ଅମୃତ ପିଧାନମସି ସ୍ୱାହା । ଓଁ ନମଃ ଶିବାୟ ଇଦଂ ଆଚମନିୟଂ ।**

(୫) **ତାମ୍ବୁଳ (ପାନ) ମନ୍ତ୍ର :-**

**ଓଁ ତାମ୍ବୁଳଂ ଗୃହ୍ୟାଣାଂ ଦେବ, ମୁଖବାସାର୍ଥେ କଳ୍ପିତଂ ଦେବ, ସୁଖବାସାର୍ଥଂ କଳ୍ପିତଂ**

**ଏକା ଲବଙ୍ଗ କର୍ପୁର ଚୁର୍ଣ୍ଣ ପର ସମନ୍ୱିତଂ ।**

**ଓଁ ନମଃ ଶିବାୟ, ଇଦଂ ତାମ୍ବୁଳଂ ସ୍ୱାହା ।**

ତା'ପରେ ଭୋଗକୁ ହାତରେ ଛୁଇଁ ରହି ମନ୍ତ୍ର ପଢ଼ିବେ । ଯଥା:-

(୬) **ବୃଷଭ ନୈବେଦ୍ୟ :-**

ଓଁ ନମଃ ବୃଷଭାୟ ଇଦଂ ନୈବେଦ୍ୟଂ ନମଃ ।

(୭) **ଦ୍ୱାରପାଳ ନୈବେଦ୍ୟଂ :-**

ଓଁ ନମଃ ଦ୍ୱାରପାଳାୟ ଇଦଂ ନୈବେଦ୍ୟଂ ନମଃ ।

(୮) **ଗଣେଶ ନୈବେଦ୍ୟଂ :-**

ଓଁ ନମୋ ଗଣେଶାୟ ଇଦଂ ନୈବେଦ୍ୟଂ ନମଃ ।

(୯) **କାର୍ତ୍ତିକେୟ ନୈବେଦ୍ୟଂ :-**

ଓଁ ନମଃ କାର୍ତ୍ତିକେୟ ଇଦଂ ନୈବେଦ୍ୟଂ ନମଃ ।



(୧୦) **ପାର୍ବତୀ ନୈବେଦ୍ୟଂ :-**

ଓଁ ନମୋ ମାତଃ ପାର୍ବତୀ ଇଦଂ ନୈବେଦ୍ୟଂ ନମଃ ।

(୧୧) **ଆଳତୀ ମନ୍ତ୍ରୀ :-**

**ଓଁ କର୍ପୂର ଗୌରଂ କରୁଣାବତାରଂ**<br>**ସଂସାରସାରଂ ଭୂଜଗେନ୍ଦ୍ର ହାରଂ ।**<br>**ସଦାବସନ୍ତଂ ହୃଦୟାରବିନ୍ଦେ**<br>**ଭବଂଭବାନୀ ସହିତଂ ନମାମି ।**<br>**ଓଁ ନମଃ ଶିବାୟ, ଇଦଂ ଆଳତୀ ସମର୍ପିୟାମି ସ୍ୱାହା ।**

(୧୨) **ଶିବ ଗାୟତ୍ରୀ ମନ୍ତ୍ର :-**

ଓଁ ତତ୍ ପୁରୁଷାୟ ବିଦ୍ମହେ ମହାଦେବାୟ<br>ଧିମହି ତନ୍ନୋ ରୁଦ୍ରଃ ପ୍ରଚୋଦୟାତ୍ ।

(୧୩)**ମହାମୃତ୍ୟୁଞ୍ଜୟ ମନ୍ତ୍ର :-**

**ଓଁ ମୃତ୍ୟୁଞ୍ଜୟ ମହାଦେବଂ । ତ୍ରାହିମାଂ ଶରଣାଂଗତମ୍ ।।**

**ଜନ୍ମମୃତ୍ୟୁ ଜରାବ୍ୟାଧି । ପିଡ଼ିତଂ କର୍ମ ବନ୍ଧନଃ ।।**

**ଓଁ ତ୍ରୟମ୍ବକଂ ଯଜାମହେ ସୁଗନ୍ଧିଂ ପୃଷ୍ଟିବର୍ଦ୍ଧନଂ**

**ଉର୍ବାରୁକ ମିବବନ୍ଧନାତ୍ ମୃତ୍ୟୋଃମୁକ୍ଷୀ ୟମାମୃତାତ୍ ।।**

(୧୪)**ପାଦୁକା ପାନ (ଶ୍ରୀଶିବ ଚରଣାମୃତ ପାନ) :-**

ଅକାଳ ମୃତ୍ୟୁବରଣଂ ସର୍ବବ୍ୟାଧି ନିବାରଣଂ

ଶିବ ପାଦୋଦକଂ ପୀତ୍ୱା ଶିରସା ଧାରୟାମ୍ୟହଂ ।



(୧୫)**କ୍ଷମା ପ୍ରାର୍ଥନା ମନ୍ତ୍ର :-** (ହାତରେ କିଛି ଫୁଲଧରି)

ଆବାହନଂ ନଜାନାମି, ନଜାନାମି ବିସର୍ଜନଂ

ପୂଜାକର୍ମଂ ନଜାନାମି, କ୍ଷମସ୍ୱ ପରମେଶ୍ୱର ।

ପାପୋହଂ ପାପକର୍ମହଂ, ପାପାତ୍ମା ପାପସମ୍ଭବଃ

ତ୍ରାହିମାଂ ତ୍ୱଂ ବିରୁପାକ୍ଷଂ, ସର୍ବପାପମ୍ ହରୋହରଃ ।

ମନ୍ତ୍ରହୀନଂ କ୍ରିୟାହୀନଂ, ଭକ୍ତିହିନଂ ମହେଶ୍ୱରଂ

ଯତ୍ ପୂଜିତଂ ମହାଦେବଂ, ପରିପୂର୍ଣ୍ଣମ୍ ତଦସ୍ତୁମେ ।

**ତୁମେବ ମାତା, ପିତା ତୁମେବ । ତୁମେବ ବନ୍ଧୁ, ସଖା ତୁମେବ । ତୁମେବ ବିଦ୍ୟା, ଦ୍ରବିଣଂ ତୁମେବ । ତୁମେବ ସର୍ବଂ ମମଦେବ ଦେବ ।** ଓଁ ନମଃ ଶିବାୟ, ଇଦଂ ପୁଷ୍ପମ୍ ସମର୍ପୟାମି ।

## ମାନସିକ ପୂଜା

[ଅର୍ଣ୍ଣ ଭୋଗ (କ୍ଷେଚଡ଼ି, ଡାଲି, ଆମ୍ବିଳ, କ୍ଷିରୀ ଇତ୍ୟାଦି) ରୋଷେଇ କରି ପ୍ରସ୍ତୁତ କରିବା ପରେ ଶିବଲିଙ୍ଗ ସମ୍ମୁଖରେ ରଖନ୍ତୁ । **ତା'ପରେ ଉପରୋକ୍ତ (୧) ଠାରୁ (୧୫) ପର୍ଯ୍ୟନ୍ତ ପୂଜାକ୍ରିୟା କରନ୍ତୁ ।** ତା'ପରେ ମାନସିକ ପୂଜାମନ୍ତ୍ର ପଢ଼ନ୍ତୁ । ଏହାପରେ ମନ୍ଦିର କବାଟ ବନ୍ଦକରି, ଭୋଗଧରି ଘରକୁ ଯାଆନ୍ତୁ, ପ୍ରସାଦ ବାଣ୍ଟି ଖାଆନ୍ତୁ । ଫେରେ ସନ୍ଧ୍ୟାବେଳେ ଦେବ ସେବାରେ ଲାଗିଯାଆନ୍ତୁ । ]

**ରତ୍ନୈ କଳ୍ପିତ ମାସନଂ,**
**ହିମଜଳୈ ସ୍ନାନଞ୍ଚ ଦିବ୍ୟାମ୍ବରଂ ।**
**ନାନାରତ୍ନଂ ବିଭୂଷିତଂ,**
**ମୃଗଂ ମୋଦା ମୋଦାଙ୍କିତଂ ଚନ୍ଦନଂ ।**
**ଜାତି ଚମ୍ପକ କେତକି ବିରଚିତଂ,**
**ପୁଷ୍ପଞ୍ଚ ଧୂପମ୍ ଦିପମ୍ ତଥା । ୧ ।**



**ସୌବର୍ଣ୍ଣେ ମଣିରତ୍ନ ଖଣ୍ଡ ରଚିତଂ,**
**ପାତ୍ରେ ଘୃତଂ ପାନସଂ ।**
**ଭକ୍ଷଂ ପଞ୍ଚବିଧିଂ ପୟୋଦଧି ଯୁତଂ,**
**ରମ୍ଭା ଫଳମ୍ ପାନସଂ,**
**ଶାକାନ୍ନ ମୟତ ସତ୍ୟଂ ରୂଚିକରଂ ।**
**କର୍ପୂର ଖଣ୍ଡଜ୍ୱଳଂ ତାମ୍ବୁଳଂ,**
**ମନସା ମୟା ବିରଚିତଂ ପ୍ରଭୋ । ୨ ।**
**ଛତ୍ରେ ଚାମର ୟୋର୍ଯୁଗଂ,**
**ବ୍ୟଞ୍ଜନକଂ ଚାଦର୍ଶନ ଦର୍ଶନଂ ।**
**ବୀଣାଭେରୀ ମୃଦଙ୍ଗ ତାଳ ରଚିତଂ,**
**ଗୀତଞ୍ଚ ନୃତ୍ୟଂ ତଥା ।**

ଅଷ୍ଟାଙ୍ଗ ପ୍ରଣତି ସ୍ତୁତି ବିଧିମେତସଂ,
ମସ୍ତୁମୟା ସଂକଳ୍ପେ ସମର୍ପିତଂ,
ତବ ବିଭୂ ତୋଷିତଂ ପ୍ରଭୂ । ୩ ।
ଇତି ଶ୍ରୀ ମାନସିକ ପୂଜା ସମାପତଃ ।।

## ସନ୍ଧ୍ୟାକାଳ ମନ୍ତ୍ର

ଓଁ ଜୟ ଶିବ ଶୁଳି ପ୍ରତାଙ୍ଗ ଧୂଳି ।
ଅନଙ୍ଗ ମୂର୍ତ୍ତି କୋଟି କନ୍ଦର୍ପ ଦର୍ପ ଧ୍ୱଂସି ।
ଲିଙ୍ଗରାଜ ଚକ୍ରବର୍ତ୍ତି ପୟରେ ବସୁମତୀ ।
ଶଶି ପର୍ଣଗ ଶାଳୀ ଯେବଣ ଯୋଗଧ୍ୟାନଂ ଚନ୍ଦ୍ରଶେଖରଂ ।
ଦିଗ ଦିଗମ୍ବରା ଫେଡ଼ପୁର ଭାରା କସ୍ତୁରୀ ନିସ୍ତାରା ।



ହୃଦେ ଜପାମାଳ କର୍ଣ୍ଣରେ କୁଣ୍ଡଳ ।
ଦେବ ବ୍ରହ୍ମାଣ୍ଡ ଫୁଟି ତିନିପୁର ଘୋଟି ।
ଶୁରମୁଲ୍ୟ ଲୋକନାରୀ ତପକୃତ ହାରୀ ।
ଅଗ୍ନିରୁ ହେଲଜାତ ଜଙ୍ଘ କଲ ହତ ।
ଭୋକାଳି ଗଣ୍ଡ ପୂଜା ହେଲ ଅଣ୍ଡ ।
ଦିବ୍ୟ କାହାଣୀ ଅମୃତ ବାଣୀ ।
ପାର୍ବତୀ ଯାହାଙ୍କ ଘରଣୀ-ଦେବ ଶୁଳପାଣି ।
ହର ହର ମହାଦେବ ମଣିମା ମଣିମା ବାମଦେବ ।
ସଂସାର ସୁଖିକର ଧର୍ମ ପ୍ରଦାନ କର ।
ଗାଈକି କ୍ଷୀରବତୀ କର, ନାରୀକି ସନ୍ତାନବତୀ କର, ଅପୁତ୍ରିକି ପୁତ୍ର ପ୍ରାପ୍ତ ହେଉ,
ଖୋଡିଆ କାମଦେବ କରିବାକୁ ଆଜ୍ଞା ହେଉ,

ମହାରାଜାଙ୍କର ପାପାଧି ପାପଗ୍ରହମାନ କ୍ଷୟ କରିବାକୁ ଆଜ୍ଞା ହେଉ,
ଆହେ ପରମ କାରଣ ପରମ ଯୋଗୀ ମଣିମା ମଣିମା ବାମଦେବ ।

## ପଞ୍ଚବକ୍ତ୍ର ବନ୍ଦନା

ଓଁ ପ୍ରାଲେୟାଚନ ବିନ୍ଦୁ କୁନ୍ଦ ଧବଳଂ ଗୋକ୍ଷିର ଫେନ ପ୍ରଭୁ
ଭାଷ୍ମାଭ୍ୟଙ୍ଗମନଙ୍ଗ ଦେହ ଦହନଂ ଜ୍ୱାଳାବଳୀ ଲୋଚନଂ
ବ୍ରହ୍ମେନ୍ଦ୍ରାଗ୍ନି ମରିଦ୍‌ଗଣୈଃ ସ୍ତୁତିପରୈ ଚଭ୍ୟର୍ଚିତଂ ଯୋଗିଭିଃ
ବନ୍ଦେହଂ ସକଳ କଳଙ୍କ ରହିତଂ ସ୍ଥାଣୋମୁଖମ୍ ପଶ୍ଚିମଂ । ୧ ।

ଓଁ ଗୌରଂ କୁଙ୍କୁମ ପିଙ୍ଗଳଂ ସୁତିଳକଂ ବ୍ୟାପାଣ୍ଡୁ ଗଣ୍ଡସ୍ଥଳଂ
ଭ୍ରୂବିକ୍ଷେପ କଟାକ୍ଷ ବୀକ୍ଷଣ ଲସତ୍ ସଂସକ୍ତ କର୍ଣ୍ଣୋତ୍ପଳଂ



ସ୍ନିଗ୍‌ଧଂ ବିମ୍ବଫଳାଧରଂ ପ୍ରହସିତଂ ନୀଳାଳକାଳଙ୍କୃତଂ
ବନ୍ଦେ ପୂର୍ଣ୍ଣ ଶଶାଙ୍କ ମଣ୍ଡଳ ନିଭଂ ବକ୍ତ୍ରଂ ହରସ୍ୟୋଉତ୍ତରଂ । ୨ ।

ଓଁ କାଳାଭ୍ର ଭ୍ରମରାଞ୍ଜନା ଚଳନିଭଂ ବ୍ୟାଦୀପ୍ତ ପିଙ୍ଗେକ୍ଷଣଂ
ଖଣ୍ଡେନ୍ଦୁ ଦ୍ୟୁତି ମିଶ୍ରିତୋ ଗ୍ରଦଶନ ପ୍ରୋଦ୍ଭିନ୍ନ ଦଂଷ୍ଟ୍ରାଙ୍କୁରଂ
ସର୍ବ ପ୍ରୀତ କପାଳ ଶୁକ୍ତି ସକଳଂ ବ୍ୟାକୀର୍ଣ୍ଣ ସଚ୍ଛେଖରଂ
ବନ୍ଦେ ଦକ୍ଷିଣ ମୀଶ୍ୱରସ୍ୟ ଜଟିଳଂ ଭ୍ରୂଭଙ୍ଗି ରୌଦ୍ର ମୁଖଂ । ୩ ।

ଓଁ ସମ୍ବର୍ତ୍ତାଗ୍ନି ତଡ଼ିତ୍ ପ୍ରଦିପ୍ତ କନକ ପ୍ରସ୍ପଧି ତେଜୋମୟଂ
ଗମ୍ଭୀର ସ୍ମିତ ନିଃସୃତୋ ପ୍ରଦଶନଂ ପ୍ରୋଭାସିତା ଶ୍ରୀଧରଂ
ବାଳେନ୍ଦୁ ଦ୍ୟୁତି ଲୋଳ ପିଙ୍ଗଳ ଜଟାଭାର ପ୍ରବଦ୍ଧୋରଗଂ
ବନ୍ଦେ ସିଦ୍ଧ ସୁରାସୁରେନ୍ଦ୍ର ନମିତଂ ପୂର୍ବଂ ମୁଖ ଶୂଳିନଃ । ୪ ।

ଓଁ ବକ୍ତାବ୍ୟକ୍ତ ଗୁଣୋତ୍ତରଂ ସୁବଦନଂ ଷଡ୍‌ବିଂଶ ତତ୍ତ୍ୱାଧିକଂ
ତସ୍ମାଦୁତ୍ତର ତତ୍ତ୍ୱମକ୍ଷୟମିତି ଧେୟଂ ସଦା ଯୋଗିଭିଃ
ବନ୍ଦେ ତାମସ ବର୍ଜିତେନ ମନସା ସୂକ୍ଷ୍ମାତି ସୂକ୍ଷ୍ମଂ ପରଂ
ଶାନ୍ତଂ ପଞ୍ଚମୀଶ୍ୱରସ୍ୟ ବଦନଂ ଚବ୍ୟାପ୍ତି ତେଜୋମୟଂ । ୫ ।

ଶାନ୍ତଂ ପଦ୍ମାସନସ୍ଥଂ ଶଶିଧର ମୁକୁଟଂ ପଞ୍ଚବକ୍ତ୍ରଂ ତ୍ରିନେତ୍ରଂ
ଶୁଳଂ ବଜ୍ରଂଞ୍ଚ ଖଡ୍‌ଗ ପରଶୁମଭୟଂ ମପ୍ୟେକ ଭାଗେ ବହନ୍ତଂ
ନାଗପାଶଞ୍ଚ ଘଣ୍ଟାଞ୍ଚଳ କରଯୁକ୍ତ ଶାଙ୍କୁଶଂ ବାମ ଭାଗେ
ନାନାଲଙ୍କାର ଯୁକ୍ତ ସ୍ୱଟିକଂ ମଣିନିଭଂ ପାର୍ବତୀଶଂ ନମାମି । ୬ ।



ପିଠେ ଯଶୋଧର ତ୍ରିଜଳ ଧରଂ କଳସଂ ଲିଙ୍ଗମାକାଶ ମୁର୍ତ୍ତିମ୍

ନକ୍ଷତ୍ର ପୁଷ୍ପମାଲ୍ୟ ଗ୍ରହଗଣଂ କୁଷୁମଂ ନେତ୍ର ଚନ୍ଦ୍ରାର୍କ ବହ୍ନି

କୁକ୍ଷୌ ସପ୍ତ ସମୁଦ୍ରଂ ଭବଗୀରୀ ଶିଖରଂ

ସପ୍ତ ପାତାଳ ବହ୍ନି ପାଦଂ ।

ବେଦଂ ଶାସ୍ତ୍ର ସଡ଼ାଙ୍ଗ ଦଶଦିଶଂ ବସନଂ

ଦିବ୍ୟ ଲିଙ୍ଗମ୍ ନମାମି ।

ଇତି ଶ୍ରୀ ପଞ୍ଚବକ୍ତ୍ର ସ୍ତୋତ୍ରଂ ସମ୍ପୁର୍ଣ୍ଣମ ।

## ନୃତ୍ୟ ତାଣ୍ଡବ

ଓଁ ଗଂ ଗଂ ଗଂ ଗଡିତଂ ଗଡିତଂ କର ଧର କର ତାଳି,
ନନ୍ଦି ଭୃକୁଟି ଦେବଭାଳି, କିହେ ଗଣନାଥଂ କିଂ
ମାରିୟଂ, ଭ୍ରଙ୍ଗମ୍ ଭ୍ରଙ୍ଗମ୍ ନାଚନ୍ତି ଶ୍ରୀ ଶିବ ଲିଙ୍ଗମ୍,
ଶିବସ୍ୟ ତଝଲି ବଜାନ୍ତି ଅତି ଉଜ୍ଜ୍ୱଳେ
ଜେଝୈ ପରଂବ୍ରହ୍ମ, ହାଟର୍ଚର ଚାରୁ ଦୁଦୁଂ ଦୁଦୁଂ
କାମବନ୍ଦଂ, ତା ତା ଧେ ଧିନାକିଟା ଧିନାକିଟା
ତାତା ଧେ ଧିନାକିଟା ମର୍ମ ଗର୍ଧକଟଂ ଥେୟଂ ଥଂ
ଶିବଂ ଇଶ୍ୱରଂ ହଂ ବିଚିତ୍ର ତାଣ୍ଡବ ଘଟ ଘଟେ
ଇତି ଶ୍ରୀ ନୃତ୍ୟ ତାଣ୍ଡବ ସମାପ୍ତମ ।





## ଶ୍ରୀ ଶିବ ତାଣ୍ଡବ (ରାବଣ କୃତ)

ଜଟାଟବୀ ଗଳଜ୍ଜ୍ୱଳ ପ୍ରବାହ ପ୍ଲାବିତସ୍ଥଳେ
ଗଳେବଲମ୍ବ୍ୟ ଲମ୍ବିତଂ ଭୁଜଙ୍ଗ ତୁଙ୍ଗ ମାଳିକାମ୍
ଡମ ଡମ ଡମ ଡମ ନିନାଦ ମନ୍ତମବ୍ୟୟଂ
ଚକାର ଚଣ୍ଡତାଣ୍ଡବଂ ତନୋତୁନଃ ଶିବ ଶିବମ୍ । ୧ ।

ଜଟାକଟାହସମ୍ଭ୍ରମ ଭ୍ରମନିର୍ଲିମ୍ପ ନିର୍ଝରୀ
ବିଲ୍ଲୋଳ ବୀଚିବଲ୍ଲରୀ ବିରାଜମାନ ମୂର୍ଦ୍ଧନି
ଧଗଦ୍ଧଗଦ୍ଧଗଜ୍ଜ୍ୱଳ ଲଲାଟ ପଟ୍ଟ ପାବକେ
କିଶୋର ଚନ୍ଦ୍ର ଶେଖରେ ରତିଃ ପ୍ରତିକ୍ଷଣଂ ମମ । ୨ ।



ଧରାଧରେନ୍ଦ୍ର ନନ୍ଦିନୀ ବିଳାସ ବନ୍ଧୁ ବନ୍ଧୁର
ସ୍ଫୁର ଦିଗନ୍ତ ସନ୍ତତି ପ୍ରମୋଦ ମାନମାନସେ
କୃପାକଟାକ୍ଷ ଧୋରଣୀ ନିରୁଦ୍ଧ ଦୁର୍ଦ୍ଧରାପଦି
କ୍ୱଚିଦିଗମ୍ୱରେ ମନୋ ବିନୋଦ ମେତୁ ବସ୍ତୁନି । ୩ ।

ଜଟା ଭୁଜଙ୍ଗ ପିଙ୍ଗଳ ସ୍ଫୁରତ୍ ଫଣାମଣି ପ୍ରଭା
କଦମ୍ୱ କୁଙ୍କୁମ ଦ୍ରବ ପ୍ରଲିପ୍ତଦିଗ ବଧୂମୁଖେ
ମଦାନ୍ଧ ସିନ୍ଧୁରାସ୍ଫୁରେ ତ୍ୱଗୁତ୍ତରୀୟ ମେଦୁରେ
ମନୋବିନୋଦ ମଦ୍ଭୂତଂ ବିଭର୍ତ୍ତୁ ଭୂତଭର୍ତ୍ତୁରି । ୪ ।



ଲଲାଟ ଚତ୍ୱରଜ୍ୱଳ ଦ୍ୱନଞ୍ଜୟ ସ୍ଫୁଲିଙ୍ଗଭା
ନିପିତ ପଞ୍ଚସାୟକଂ ନମ ନିର୍ଲିମ୍ପ ନାୟକଂ
ସୁଧା ମୟୁଖେଲେଖୟା ବିରାଜମାନ ଶେଖରଂ
ମହାକପାଳି ସମ୍ପଦେ ଶିରୋ ଜଟାଳ ମସ୍ତୁନଃ । ୫ ।

ସହସ୍ର ଲୋଚନ ପ୍ରଭୁତ୍ୟ ଶେଷଲେଖ ଶେଖର
ପ୍ରସୁନ୍ନ ଧୂଳିଧୋରଣୀ ବିଧୂସରାଂଘ୍ର ଘ୍ରୀପିଠଭୂଃ
ଭୂଜଙ୍ଗ ରାଜମାଳୟା ନିବଦ୍ଧ ଜାଟଜୁଟକଃ
ଶ୍ରିୟୈ ଚିରାୟ ଜାୟତାଂ ଚକୋର ବନ୍ଧୁ ଶେଖରଃ । ୬ ।

କରାଳ ଭାଲପଟ୍ଟିକା ଧଗଦ୍ଧଗଦ୍ଧଗର୍ଜ୍ୱଳ
ଦ୍ଧନଞ୍ଜୟା ହୁତିକୃତଂ ପ୍ରଚଣ୍ଡ ପଞ୍ଚସାୟକେ
ଧରାଧରେନ୍ଦ୍ର ନନ୍ଦିନୀ କୁଚାଗ୍ର ଚିତ୍ରପତ୍ରକ
ପ୍ରକଳ୍ପ ନୈକଶିଳ୍ପିନି ତ୍ରିଲୋଚନେ  ରତିର୍ମମ । ୭ ।

ନବୀନ ମେଘମଣ୍ଡଳି ନିରୁଦ୍ଧ ଦୁର୍ଦ୍ଧର ସ୍ଫୁରତ୍
କୁହୁର୍ନିଶୀଥିନୀତମଃ ପ୍ରବନ୍ଧ ବନ୍ଧକନ୍ଧରଃ
ନିର୍ଲିମ୍ପ ନିର୍ଝରୀ ଧରସ୍ତନୋତୁ କୃତ୍ତି ସିନ୍ଧୂରଃ
କଳାନିଧାନ ବନ୍ଧୁରଃ ଶ୍ରିୟଂ ଜଗଦ୍ଧୁରନ୍ଧରଃ । ୮ ।



ପ୍ରଫୁଲ୍ଲ ନୀଳପଙ୍କଜ ପ୍ରପଞ୍ଚକାଳିମ ପ୍ରଭା
ବିଲମ୍ବିକଣ୍ଠ କନ୍ଦଳୀ ରୁଚି ପ୍ରବନ୍ଧ କନ୍ଧରଂ
ସ୍ମରଚ୍ଛିଦଂ ପୁରଚ୍ଛିଦଂ ଭବଚ୍ଛିଦଂ ମଖଚ୍ଛିଦଂ
ଗଜଚ୍ଛିଦାନ୍ଧ କଚ୍ଛିଦଂ ତମନ୍ତ କଚ୍ଛିଦଂ ଭଜେ । ୯ ।

ଅଖର୍ବ ସର୍ବମଙ୍ଗଳା କଳା କଦମ୍ବ ମଞ୍ଜରୀ
ରସ ପ୍ରବାହ ମାଧୁରୀ ବିଜୃମ୍ଭଣା ମଧୁବ୍ରତଂ
ସ୍ମରାନ୍ତକଂ ପୁରାନ୍ତକଂ ଭବାନ୍ତକଂ ମଖାନ୍ତକଂ
ଗଜାନ୍ତ କାନ୍ଧକାନ୍ତଙ୍କ ତମନ୍ତଂ କାନ୍ତକଂ ଭଜେ । ୧୦ ।

ଜୟ ତ୍ୱଦ ଭ୍ରାବିଭ୍ରମ ଭୁଜଙ୍ଗମ ଶ୍ୱସଦ୍ୱିନି
ର୍ଗମକ୍ରମ ସ୍ଫୁରତ୍ କରାଳ ଭାଲହବ୍ୟ ବାଟଜ୍ୱଳଦ୍
ଧୃମିଂ ଧୃମିଂ ଧୃମିଂ ଧ୍ୱନନ୍ ମୃଗଙ୍ଗ ତୁଙ୍ଗ ମଙ୍ଗଳ
ଧ୍ୱନି କ୍ରମ ପ୍ରବର୍ତ୍ତିତ ପ୍ରଚଣ୍ଡ ତାଣ୍ଡବ ଶିବଃ । ୧୧ ।

ଦୃଷଦ୍ ବିଚିତ୍ର ତଳ୍ପୟୋ ର୍ଭୁଜଂଗ ମୌକ୍ତିକସ୍ରଜୋ
ଗରିଷ୍ଠ ରତ୍ନଲୋଷ୍ଟ୍ରୟୋଃ ସୁହୃଦ୍ୱି ପକ୍ଷ ପକ୍ଷୟୋଃ
ତୃଷାର ବିନ୍ଦୁଚକ୍ଷୁଷୋଃ ପ୍ରଜାମହୀ ମହେନ୍ଦ୍ରୟୋଃ
ସମପ୍ରବୃତିକଃ ସଦାଂ ସଦାଶିବଂ ଭଜାମ୍ୟହଂ । ୧୨ ।



କଦା ନିର୍ଲିମ୍ପ ନିର୍ଝରୀ ନିକୁଞ୍ଜ କୋଟରେ ବସନ୍
ବିମୁକ୍ତ ଦୁର୍ଗତିଃ ସଦା ଶିରଃସ୍ଥ ମଞ୍ଜଳି ବହନ୍
ବିଲୋଳ ଲୋଳଲୋଚନେ ଲଲାମଭାଲ ଲଗ୍ନକଂ
ଶିବେତି ମନ୍ତ୍ର ମୁଚରନ କଦା ସୁଖି ଉଜାମ୍ୟହଂ । ୧୩ ।

ନିର୍ଲିମ୍ପ ନାଥନାଗରୀ କଦମ୍ବ ମୌଳିମଲ୍ଲିକା
ନିଗୁମ୍ଫଂ ନିର୍ଭରକ୍ଷର ନଧୁଷ୍ଣିକା ମନୋହର
ତନୋତୁନୋ ମନମୁଦଂ ବିନୋଦିନି ମହର୍ନିସିଂ
ପରିଶ୍ରୟଃ ପରଂପଦଂ ତଦଙ୍ଗଜ ତିଷାଂଚୟଃ । ୧୪ ।

ପ୍ରଚଣ୍ଡ ବାଡ଼ବାନଳ ପ୍ରଭାଶୁଭ ପ୍ରଚାରଣେ
ମହାଷ୍ଟ ସିଦ୍ଧକାମିନି ଜନା ବଧୁତ ଜଳ୍ପନା
ବିଭକ୍ତ ବାମଲୋଚନା ବିବାହ କାଳିକ ଧ୍ୱନିଃ
ଶିବେତି ମନ୍ତ୍ର ଭୂଷଣାଂ ଜଗତ୍ ଜୟାୟ ଜାୟତାଂ । ୧୫ ।

ନମାମି ପାର୍ବତୀ ପତିଂ ନମାମି ଜାହ୍ନବି ପତିଂ
ନମାମି ଭକ୍ତ ବସ୍ଳଳଂ ନମାମି ରକ୍ତ ଲୋଚନଂ
ନମାମି ଚନ୍ଦ୍ରଶେଖରଂ ନମାମି ଦୁଃଖ ମୋଚନଂ
ତଦିୟ ପାଦପଙ୍କଜଂ ସ୍ମରାମ୍ୟହଂ ମହେଶ୍ୱରଂ । ୧୬ ।



ରାବଣେନ କୃତଂ ସ୍ତୋତ୍ରଂ ଯଃ ପଠେତ୍ ଶିବ ସନିଧୌ
ବାଞ୍ଛତାଂ ସଃ ପ୍ରାପ୍ତି ର୍ଭବତୀ ଅନ୍ତିମେ ଶିବଲୋକଂ ସଗଚ୍ଛତି ।
ଇତି ଶ୍ରୀ ପୃଥିବୀ ପ୍ରସିଦ୍ଧ ବୈଜ୍ଞାନିକ ଦଶବଦନ କୃତଂ ଶ୍ରୀ ଶିବ ତାଣ୍ଡବ ସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।

## ତୁଳସି ତୋଳା ମନ୍ତ୍ର

ତୁଳସି ଅମୃତ ନାମାସି ମାହାତ୍ମ୍ୟ କେଶବ ପ୍ରିୟେ
ଶିବ ପୂଜନାର୍ଥେ ବିଛୋର୍ମାମୀ ସୋଭନି ।

## ବେଲପତ୍ର ତୋଳା ମନ୍ତ୍ର

ମୁଳେତ୍ୱଂ ବିଷ୍ଣୁ ରୂପାୟଂ ମଧ୍ୟେତ୍ୱଂ ପିତାମହ
ଅଗ୍ରେ ଶିବ ରୂପାୟ ବୃକ୍ଷରାଜ ନମସ୍ତୁତେ ।

## ଶ୍ରୀଦୁର୍ଗା ଦର୍ଶନ

ଶରଣାଗତ ଦୀନାର୍ତ୍ତି ପରିତ୍ରାଣ ପରାୟଣେ
ସର୍ବସ୍ୟାର୍ତ୍ତି ହରେଦେବୀ ନାରାୟଣୀ ନମସ୍ତୁତେ ।
ସର୍ବ ମଙ୍ଗଳ ମାଙ୍ଗଲ୍ୟେ ଶିବେ ସର୍ବାର୍ଥ ସାଧିକେ
ଶରଣ୍ୟେ ତ୍ର୍ୟମ୍ବକେ ଗୌରୀ ନାରାୟଣୀ ନମୋସ୍ତୁତେ ।
ଯା ଦେବୀ ସର୍ବ ଭୂତେଷୁ ମାତୃ ରୂପେଣ ସଂସ୍ଥିତାଃ
ନମସ୍ତସ୍ମୈ ନମସ୍ତସ୍ମୈ ନମସ୍ତସ୍ମୈ ନମୋ ନମଃ ।

## ଶ୍ରୀ ଦୁର୍ଗା ଭୋଗ

ଓଁ ଅମ୍ବେ ଅମ୍ବିକେ ଅମ୍ବାଳିକେ ନୈବେଦ୍ୟଂ ସ୍ୱାହା ।



## ଶ୍ରୀ ବଡ଼ରାଉଳ ଭୋଗ

ଓଁ ନମୋ ମାତଃ ବଡ଼ ରାଉଳାଣୀ ସୀତା ଠାକୁରାଣୀ,
ଏଷ ନୈବେଦ୍ୟଂ ସ୍ୱାହା ।

## ସହସ୍ରାକ୍ଷର ଅମୋଘ ଶିବ କବଚ

ମହାପୁରୁଷମାନେ କହିଛନ୍ତି ଯେ - ଏହି ଅମୋଘ କବଚକୁ ଯେତେ ପ୍ରଶଂସା କଲେ ମଧ୍ୟ କମ୍ ପଡ଼ିବ । ଯଦି ଆପଣଙ୍କ ଘରେ କିଛି ଶଙ୍କଟ ପଡ଼ିଛି ନତୁବା ଆପଣ ନିଜେ ମାନସିକ ଚିନ୍ତାରେ କଷ୍ଟ ପାଉଛନ୍ତି, ତେବେ କେବଳ ଥରେ ମାତ୍ର ଏହି ଅମୋଘ କବଚକୁ ଭକ୍ତିର ଓ ବିଶ୍ୱାସର ସହିତ ପାଠ କରି ଦେଖନ୍ତୁ । ଆପଣ ଅନୁଭବ କରିପାରିବେ ଯେ ପ୍ରଭୂ ଶିବ-ଶକ୍ତିଙ୍କର କରୁଣା ଆପଣଙ୍କ ଉପରେ ହେଉଛି ।

ଓଁ ନମୋ ଭଗବତେ ସଦାଶିବାୟ, ଜୟ କୈଳାସାଧିପତି କୈଳାସନାଥାୟ, ସକଳ ତତ୍ତ୍ୱାତକାୟ, ସର୍ବମନ୍ତ୍ର ସ୍ୱରୁପାୟ, ସର୍ବଯନ୍ତ୍ରୋ ଭିଷ୍ଠିକାୟ, ସର୍ବତନ୍ତ୍ର ସ୍ୱରୁପାୟ, ସର୍ବତତ୍ତ୍ୱ ବିଦୁରାୟ, ବ୍ରହ୍ମାରୂଦ୍ରାବତାରୀଣେ ନୀଳକଣ୍ଠାୟ, ପାର୍ବତୀ ମନୋହର ପ୍ରୀୟାୟ, ସୋମ-ସୂର୍ଯ୍ୟାଗ୍ନି ଲୋଚନାୟ, ଭସ୍ମୋଦ୍ଧୂଳିତ ବିଗ୍ରହାୟ, ମହାମଣୀ ମୁକୁଟ ଧାରଣାୟ, ମାଣିକ୍ୟ ଭୂଷଣାୟ, ସୃଷ୍ଟି ସ୍ଥିତି ପ୍ରଳୟକାଳ ରୌଦ୍ରାବତାରାୟ, ଦକ୍ଷାଧ୍ୱର ଧ୍ୱଂସକାୟ,

ତତ୍ତ୍ୱାତୀତାୟ ଗଙ୍ଗାଧରାୟ, ସର୍ବ ଦେବାଧିଦେବାୟ, ଷଡ଼ାଶ୍ରୟାୟ ବେଦାନ୍ତ ସାରାୟ, ତ୍ରୀବର୍ଗ ସାଧନାଯାନେକ, କୋଟି ବ୍ରହ୍ମାଣ୍ଡ ନାୟକ, ଅନନ୍ତ ବାସୁକି ତକ୍ଷକ କର୍କୋଟକ ଶଙ୍ଖକୁଳିକପଦମ୍, ମହାପଦମେତ୍ୟଷ୍ଟ ନାଗକୂଳ ଭୂଷଣାୟ, ପ୍ରାଣ ସ୍ୱରୁପାୟ, ଚିଦାକାସାୟାକା ସଦିସ୍ୱରୂପାୟ, ଗ୍ରହନକ୍ଷତ୍ରମାଳିନେ ସକଳାୟ, କଳଙ୍କ ରହିତାୟ, ସକଳ ଲୋକେକ କର୍ତ୍ତେ, ସକଳ ଲୋକେକ ସାକ୍ଷୀଣେ, ସକଳ ନିମ ଗୃହାୟ, ସକଳ ବେଦାନ୍ତ ପାରଗାୟ, ସକଳ ଲୋକୈକ ବରପ୍ରଦାୟ, ସକଳ ଲୋକୈକ ଶଙ୍କରାୟ, ଶଶାଂକ ଶେଖରାୟ, ସାସ୍ୱତ ନିଜାଭାଷାୟ, ନିରାଭାଷାୟ, ନିରାମୟାୟ, ନିର୍ମଳାୟ, ନିର୍ଲୋଭାୟ, ନିର୍ମୋହାୟ, ନିର୍ମାଦାୟ, ନିଶ୍ଚିନ୍ତାୟ, ନିରଂକାରାୟ, ନିରାକୁଳାୟ, ନିସ୍କଳଂକାୟ ନିର୍ଗୁଣାୟ, ନିସ୍କାମାୟ, ନିରୁପପ୍ଲାବାୟ, ନିରବ୍ଧାୟ ନିରନ୍ତରାୟ, ନିଷ୍କାରଣାୟ, ନିରାନ୍ତକାୟ, ନିଷ୍ପ୍ରପଞ୍ଚାୟ ନିଃସଂଗାୟ, ନିର୍ଦ୍ୱନ୍ଦ୍ୱାୟ, ନିରାଧାରାୟ, ନିରୋଗାୟ ନିଷ୍କ୍ରୋଧାୟ, ନିର୍ଗମାୟ, ନିଷ୍ପାପାୟ, ନିର୍ଭୟାୟ, ନିର୍ବିକଳ୍ପାୟ, ନିର୍ଭେଦାୟ, ନିଷ୍କ୍ରିୟାୟ, ନିସ୍ତୁଲାୟ, ନିଃସଂସୟାୟ, ନିରଞ୍ଜନାୟ, ନିରୂପମ ବିଭୂବାୟ, ନିତ୍ୟ ଶୁଦ୍ଧବୁଦ୍ଧ ପରିପୂର୍ଣ୍ଣ ସଚ୍ଚିଦାନନ୍ଦଦ୍ୱୟାୟ, ପରମ ଶାନ୍ତ ପ୍ରକାଶ ତେଜୋରୂପାୟ, ତେଜୋମୟାୟ, ଜୟଜୟ ରୁଦ୍ର ମହାରୌଦ୍ର ଭଦ୍ରାବତାର ମହାଭୈରବ କାଳଭୈରବ କଳ୍ପାନ୍ତଭୈରବ କପାଳମାଳାଧର ଖଟ୍‌ବାଂଗଖଡ଼ଗ ଚର୍ମପାଶାଙ୍କୁଶ ଡମରୁକର ତ୍ରୀଶୁଳ ଚାପବାଣ ଗଦାଶକ୍ତି ଭିନ୍ଦପାଳତୋମର



ମୁସଲ୍ ମୁଦ୍‌ଗର ପାଶପରିଧ ଭୂଶୁଣ୍ଡି ଶତଧ୍ନୀ ଚକ୍ରଧାୟୁଧ ଭୀଷଣକର ସହସ୍ରମୁଖ ଦଂଷ୍ଟ୍ରା କରାଳ ବଦନ ବିକଟ୍ଟାଟହାସ ବିସ୍ଫାରିତ ବ୍ରହ୍ମାଣ୍ଡ ମଣ୍ଡଳ ନାଗେନ୍ଦ୍ରକୁଣ୍ଡଳ ନାଗେନ୍ଦ୍ରହାର ନାଗେନ୍ଦ୍ର ବଳୟ ନାଗେନ୍ଦ୍ର ଚର୍ମଧର ମୃତ୍ୟୁଞ୍ଜୟ ତ୍ରୟମ୍ବକ ତ୍ରୀପୁରାନ୍ତକ ବିଶ୍ୱରୂପ ବିରୁପାକ୍ଷ ବିଶ୍ୱେଶ୍ୱର ବୃଷଭ ବାହନ ବିଶ୍ୱତୋମୁଖ ସର୍ବତୋ ରକ୍ଷରକ୍ଷ ମାଂ ଜ୍ୱଳଜ୍ୱଳ ମହାମୃତ୍ୟୁଭୟଂ ନାଶୟ ନାଶୟ ଚୋରଭୟ ମୁତ୍ସାଦୟୋତ୍ସାଦୟ ବିଷସର୍ପ ଭୟଂ ସମୟ ସମୟ ବୈରାହ୍ମାରୟ ମାରୟ ମମ୍ ଶତ୍ରୁନୁଚ୍ଚାଟୟୋଚ୍ଚାଟୟ ତ୍ରୀଶୁଳେନ ବିଦାରୟ ବିଦାରୟ କୁଠାରେଣ ଭିନ୍ଧିଭିନ୍ଧି ଖଣ୍ଡଗେନ ଛିନ୍ଧିଛିନ୍ଧି ଖଟ୍‌ବାଂଗେନ ବିପୋଥୟ ବିପୋଥୟ ମୁସଳେନ ନୀଷ୍ପେଷୟ ନୀଷ୍ପେଷୟ ବାଣୈଃ ସନ୍ତାଡ଼ୟ ସନ୍ତାଡ଼ୟଂ ରକ୍ଷାସି ଭିଷୟ ଭିଷୟା ଶେଷଭୂତାନୀ ବିଦ୍ରାବୟ ବିଦ୍ରାବୟ କୁଷ୍ମାଣ୍ଡ ବେତାଳମାରୀ ବ୍ରହ୍ମରାକ୍ଷସ ଗଣାନ ସଂତ୍ରାଶୟ ସଂତ୍ରାଶୟ ମାମ୍‌ଭୟଂ କୁରୁକୁରୁ ବିତ୍ରସ୍ତମାମା ସ୍ୱାସୟା ସ୍ୱାସୟ ନରକଭୟାନ୍ମା ମୁଦ୍ଧରୋଦ୍ଧର ସଞ୍ଜିସୟ ସଞ୍ଜିବୟ କ୍ଷୁତ୍‌ଭ୍ୟାଂ ମାମପ୍ୟାୟୟାପ୍ୟାୟ ଦୁଃଖାତୁରଂ ମାମନନ୍ଦୟାନନ୍ଦୟ ଶିବକବଚେନ ମାମାଚ୍ଛାଦୟ ମୃତ୍ୟୁଞ୍ଜୟ ତ୍ରୟମ୍ବକ ସଦାଶିବ ନମସ୍ତେ ନମସ୍ତେ ।

**ଓଁ ନମଃ ଶିବାୟ**

**ଓଁ ନମୋ ମାତଃ ପାର୍ବତୀ ।**

## ଏ ପୁସ୍ତକ ସମ୍ବନ୍ଧରେ ........



ଫଣୀନ୍ଦ୍ର ଚନ୍ଦ୍ର ପଣ୍ଡା

(ପ୍ରାକ୍ତନ ଦର୍ଶନଶାସ୍ତ୍ରର ପ୍ରାଧ୍ୟାପକ
ସରକାରୀ କଲେଜ)

ଗଞ୍ଜାମ ଜିଲ୍ଲା ଦିଗପହଣ୍ଡି ନିକଟବର୍ତ୍ତୀ ସାହାସପୁର ଗ୍ରାମରେ ମହେଶ୍ୱର, ବିଷ୍ଣୁ ଓ ବ୍ରହ୍ମା ସ୍ୱୟଂଭୂ ଲିଙ୍ଗ ରୂପେ ପ୍ରକଟିତ ହୋଇଛନ୍ତି । ପ୍ରାୟ ୫୦୦ ବର୍ଷ ପୂର୍ବେ ଏହି ଲିଙ୍ଗଦେବମାନେ ଜ୍ୟୋତିରୂପରେ ଜଣେ ଗୋପାଳକୁ ପ୍ରଥମ ଦର୍ଶନ ଦେଇଥିଲେ । ସାନଖେମୁଣ୍ଡି (ପୋଡ଼ାମାରି)ର ରାଜା ମନ୍ଦିର ତୋଳିଦେଲେ, ଜମି ଖଞ୍ଜି ଦେଲେ ଓ ତିନିଜଣ ରାଉଳଙ୍କୁ ଛଣମେରି ଗାଁରୁ ଆଣି ଦେବସେବା ପୂଜାରେ ନିଯୁକ୍ତି କଲେ । ଏ ପୁସ୍ତକର ଲେଖକ ଶ୍ରୀ ସହଦେବ ରାଉଳ ଏହି ପୂଜକ ବଂଶୋଦ୍ଭବ ଅଟନ୍ତି । ପୁସ୍ତକର ତୃତୀୟ ଭାଗ ରାଉଳ ମନ୍ତ୍ରରେ ଏ ମନ୍ଦିରର ପୂଜାବିଧି ଓ ମନ୍ତ୍ର ସନ୍ନିବେଶିତ ହୋଇଛି । ଶିବ ଉପାସନା ପାଇଁ ଏହା ସର୍ବସାଧାରଣ ମନ୍ତ୍ର ମଧ୍ୟ ଅଟେ ।

ପୁସ୍ତକ ଦ୍ୱିତୀୟ ଭାଗରେ ପାଠକ ତୀର୍ଥ ଦର୍ଶନର ଅନୁଭବ କରିବେ । ଲେଖକ ଭାରତର ସମସ୍ତ ଶୈବତୀର୍ଥ ଦର୍ଶନ କରି ଦ୍ୱାଦଶ ଜ୍ୟୋତିର୍ଲିଙ୍ଗଙ୍କର ବର୍ଣ୍ଣନା କରିଛନ୍ତି । ଶେଷରେ ନିଜ ଗ୍ରାମର ଜ୍ୟୋତିର୍ଲିଙ୍ଗଙ୍କୁ ଅନ୍ତର୍ଭୂକ୍ତ କରିଛନ୍ତି । ଏ ପିଠର ବିଶେଷତ୍ୱ ଏହି ଯେ - ବିଷ୍ଣୁ ଓ ବ୍ରହ୍ମା ମଧ୍ୟ ଏଠାରେ ଲିଙ୍ଗ ରୂପେ ପୂଜିତ ହୁଅନ୍ତି । ଏହି ପୀଠ ତ୍ର୍ୟମ୍ବକେଶ୍ୱର ଜ୍ୟୋତିର୍ଲିଙ୍ଗର ସମସାମୟୀକ ଓ ସମରୂପ ଅଟେ । ଇଶ୍ୱର ଭକ୍ତି ଓ ଶ୍ରଦ୍ଧା ଶିବ ତତ୍ତ୍ୱରେ କେନ୍ଦ୍ରିଭୂତ ହୋଇଛି ।

ଦ୍ୱିତୀୟ ଭାଗରେ ଆତ୍ମଲିଙ୍ଗ କହିଲେ ମାନସ ପୂଜାକୁ ବୁଝାଉଛି । କଳ୍ପନାରେ ସମସ୍ତ ପୂଜାବିଧି ପାଳନ ଆତ୍ମଲିଙ୍ଗ ଅଟେ । ପୁସ୍ତକର ପ୍ରଥମ ଭାଗରେ ଧର୍ମ ଧାରଣାର ସାଧାରଣ ପରିଚୟ ଦିଆହୋଇଛି ।

ଲେଖିକ ନିଜ ଗ୍ରାମର ଇଷ୍ଟଦେବ, ନିଜ ବଂଶ ପରମ୍ପରା ଓ ପରିବାରର ସଂସ୍କାର ଦ୍ୱାରା ଉଦ୍‌ବୁଦ୍ଧ ହୋଇ, ନିଜ ଅନୁଭୂତିର ଭିତ୍ତିରେ ପୂସ୍ତକଟି ରଚନା କରିଛନ୍ତି । ଶ୍ରଦ୍ଧାଳୁ ମାନଙ୍କର ପାଇଁ ପୁସ୍ତକଟି ଉପଯୋଗି ହେବ ।